ଲେଖକ:—

## ଶ୍ରୀ ବଳରାମ ମହାନ୍ତି

ପ୍ରଥମ ମୁଦ୍ରଣ
୧୯୪୭

**ମୂଲ୍ୟ-ଦୁଇ ଟଙ୍କା**

ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର

ଯେଉଁ ବନ୍ଧୁର ପଥରେ ବିଶ୍ରାମର ସ୍ଥାନ ନାହିଁ,

କିନ୍ତୁ

ଯେଉଁ ପଥର ଶେଷ ସ୍ୱାଧୀନତା ଓ ଭାରତର ମୁକ୍ତିରେ

ଯାଇ ମିଶିଛି ସେହି ବନ୍ଧୁର ପଥର ଦୁର୍ଦ୍ଧର୍ଷ ଯାତ୍ରୀଙ୍କ

ହସ୍ତରେ............ ..

ଚିନ୍ତାଭ

ସାଫଲ୍ୟ ନଷ୍ଟ କରୁଛି । ସ୍ୱାଧୀନତା ସଂଗ୍ରାମରେ ନାଜୀବାଦ, ଫାସିଷ୍ଟବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ହେଉଥିବା ସଂଗ୍ରାମରେ ମୁକ୍ତଭାରତ ତାହାର ସମସ୍ତ ଶକ୍ତି ସମ୍ପତ୍ତି ଉତ୍ସର୍ଗ କରି ପାରିବ । ଏହାଦ୍ୱାରା ଯୁଦ୍ଧର ଗତି ବଦଳିଯିବ ଏବଂ ପରାଧୀନ, ପଦଦଳିତ ମାନବ ସମାଜ ମିଳିତ ଜାତି ପକ୍ଷରେ ଠିଆହେବେ ଏବଂ ଭାରତ ସେମାନଙ୍କର ବନ୍ଧୁ ହୋଇ ଜଗତରେ ନୈତିକ ଓ ଆଧ୍ୟାତ୍ମିକ ନେତୃତ୍ୱ ନେବ । ପରାଧୀନ ଭାରତ ବ୍ରିଟିଶ ସାମ୍ରାଜ୍ୟବାଦର ସଙ୍କେତ ହୋଇ ରହିବ ଓ ସେହି ସାମ୍ରାଜ୍ୟବାଦ-ଦଳଙ୍କ ଯୁଦ୍ଧର ଗତିରେ ବାଧାଘାତ ଘଟାଇବ ।

ତେଣୁ ଆଜିକାର ବିପଦ୍ର ଦୃଷ୍ଟିରୁ ଭାରତର ସ୍ୱାଧୀନତା ଓ ବ୍ରିଟିଶ ଶକ୍ତିର ଅବସାନ ଲୋଡ଼ା । ଭବିଷ୍ୟତ ପାଇଁ ପ୍ରତିଜ୍ଞା ବା କରାରନାମା ବର୍ତ୍ତମାନ ଅବସ୍ଥାକୁ ସୁଧାରି ପାରିବ ନାହିଁ କି ବିପଦକୁ ଏଡ଼ାଇ ପାରିବ ନାହିଁ । ତାହା ଦ୍ୱାରା ଜନସାଧାରଣଙ୍କ ମନରେ ଆବଶ୍ୟକୀୟ ପ୍ରଭାବ ବିସ୍ତାର କରି ପାରିବ ନାହିଁ । କେବଳ ସ୍ୱାଧୀନତା ଆଲୋକ ସେହି କୋଟି କୋଟି ଜନସାଧାରଣଙ୍କର ସ୍ୱାଭାବିକ ଶକ୍ତି ଓ ଅନ୍ତରର ସ୍ଫୁର୍ତ୍ତି ଫିଟାଇପାରିବ, ଯାହା ଫଳରେ ଯୁଦ୍ଧର ସ୍ୱରୂପ ବଦଳିଯିବ ।

ତେଣୁ ନିଖିଳଭାରତ କଂଗ୍ରେସ କମିଟି ଦୃଢ଼ ଭାବରେ ଦାବୀ କରୁଛନ୍ତି ଯେ ଭାରତରୁ ଇଂରେଜ ଶାସନ ଚାଲିଯାଉ । ଭାରତ ସ୍ୱାଧୀନତା ଘୋଷଣା ହେଲା ପରେ ଏକ ଅସ୍ଥାୟୀ ସରକାର ଗଠିତ ହେବ ଏବଂ ସେ ସରକାର ମିଳିତ ଜାତିର ମିତ୍ର ହୋଇ ସ୍ୱାଧୀନତା ପାଇଁ ଚାଲିଥିବା ସବୁ ସଂଗ୍ରାମରେ ସେମାନଙ୍କ ଦୁଃଖ କଷ୍ଟରେ ଭାଗୀଦାର ହେବ । ସମସ୍ତ ବଡ଼ବଡ଼ ରାଜ୍ୟଦଳ ଓ ଗୋଷ୍ଠୀର ସହଯୋଗରେ ସେ ଅସ୍ଥାୟୀ ସରକାର ଗଠାହେବ । ତେଣୁ ସେ ସରକାର ଭାରତର ପ୍ରଧାନ ପ୍ରଧାନ ଗୋଷ୍ଠୀର ପ୍ରତିନିଧି ହୋଇ ଏକ ମିଳିତ ସରକାର ହେବ । ତାହାର ମୁଖ୍ୟ ଦାୟିତ୍ୱ

## ଅଗଷ୍ଟ ପ୍ରସ୍ତାବ—

ଭାରତବାସୀ ଯେଉଁମାନେ ସ୍ୱାଧୀନତା ପାଇଁ ସଂଗ୍ରାମ କରିବେ, ସେମାନେ ନିଜ ନିଜର ପଥପ୍ରଦର୍ଶନ କରିବେ ଏବଂ ନିଜକୁ ସେହି ଭଳି ପଥରେ ଚାଳିତ କରିବେ ଯେଉଁ ପଥରେ ବିଶ୍ରାମର ସ୍ଥାନ ନାହିଁ ଏବଂ ଯେଉଁ ପଥର ଶେଷ ସ୍ୱାଧୀନତା ଓ ଭାରତର ମୁକ୍ତିରେ ଯାଇ ମିଶିଛି ।

ଶେଷରେ, ନିଖିଳ ଭାରତ କଂଗ୍ରେସ କମିଟି ସ୍ପଷ୍ଟ କରି ସମସ୍ତଙ୍କ ଆଗରେ ଜଣାଇଦେବାକୁ ଚାହୁଁଛି ଯେ ଯଦିଓ ଏହା ଭାରତର ଭବିଷ୍ୟତ ଶାସନ ସମ୍ପର୍କରେ ତାର ମତ ବ୍ୟକ୍ତ କରିଛି ଏବଂ ତାର [illegible]



# ଅଗଷ୍ଟ ବିପ୍ଳବ



## ୧୯୩୯ରେ ଦୁର୍ଦ୍ଦିନ

ବିଶ୍ୱଜନତା ପକ୍ଷରେ ବାସ୍ତବିକ ତାହା ଏକ ଦୁର୍ଦ୍ଦିନ। ବିଶ୍ୱ ସଭ୍ୟତାର ଇତିହାସରେ ତାହା ଏକ ଘୋର ଅନ୍ଧକାରମୟ ଯୁଗର ସୂଚନା। ୧୯୩୯ ସେପ୍ଟେମ୍ବର ତା ୩ ରିଖ। ଇଉରୋପର ଏକ ଶାନ୍ତିପ୍ରିୟ ରାଜ୍ୟ ପୋଲାଣ୍ଡରେ ବିଶ୍ୱଯୁଦ୍ଧର ମୂଳପତ୍ତନ ହେଲା। ହତ୍ୟା, ବିଶ୍ୱାସଘାତକତା, ଅତ୍ୟାଚାର, ଷଡ଼ଯନ୍ତ୍ର ଓ ଦମନର ନିର୍ବିଘ୍ନ ରାଜତ୍ୱ ଚାଲିବ, ଏହି ଚିନ୍ତାରେ ବିଶ୍ୱବାସୀ ଆତଙ୍କିତ ହୋଇ ପଡ଼ିଲେ। ଆଜି ପରାଧୀନ ଭାରତ ! ସେ ଜାତିକୁ ରକ୍ଷା କରିବାର ସାମରିକ ଉପାୟ କିଛି ନାହିଁ। ତାକୁ କିଏ ବା ରକ୍ଷା କରିବ ତାହା ମଧ୍ୟ ଜାଣି ନାହିଁ। ଯାହାହେଉ ତତ୍କାଳୀନ ବଡ଼ଲାଟ ଲର୍ଡ଼ ଲିନ୍‌ଲିଥ୍‌ଗୋ ଭାରତର ପ୍ରତିନିଧି ବୋଲାଇ ଭାରତ ପକ୍ଷରୁ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଲେ। ସଙ୍ଗେ ସଙ୍ଗେ ଭାରତର ଜନମତ ତଥା ସମ୍ବାଦପତ୍ରମାନଙ୍କୁ ଶୃଙ୍ଖଳିତ କରିବାକୁ ଏକ ନୂଆ ଉପାୟ ଖୋଜା ହେଲା। ତାହା ହେଲା ଭାରତରକ୍ଷା ଆଇନ।

ସେତେବେଳେ ଭାରତର ୧୧ଟି ପ୍ରଦେଶରେ ଲୋକପ୍ରତିନିଧି ସରକାର ଥାଏ ଏବଂ ୭ଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ କାର୍ଯ୍ୟ କରୁଥାଏ। ଭାରତର ଜନମତକୁ ବେଖାତିର କରି ଜବରଦସ୍ତି

ଭାରତକୁ ଯୁଦ୍ଧରେ ଭର୍ତ୍ତି କରି ଦେବା କଂଗ୍ରେସ ପକ୍ଷରେ ବରଦାସ୍ତ ହେଲା ନାହିଁ । ସବୁ ଅସମ୍ମାନ ଓ ସବୁ ଅପମାନ ମାନ ହଜମ କରି ଯେ କୌଣସି ମତେ ହାତରେ କ୍ଷମତା ରଖିବା କଂଗ୍ରେସର ନୀତି ନୁହେଁ । ତେଣୁ କଂଗ୍ରେସ କାର୍ଯ୍ୟକାରୀ କମିଟି କଂଗ୍ରେସ ମନ୍ତ୍ରୀମଣ୍ଡଳଙ୍କୁ ସରକାରୀ ଘୋଷଣାର ପ୍ରତିବାଦରେ ଇସ୍ତଫା ଦେଇ ଚାଲିଆସିବାକୁ ନିର୍ଦ୍ଦେଶ ଦେଲେ । ୭ଟି ପ୍ରଦେଶରେ ଲୋକ ପ୍ରତିନିଧି ସରକାର ଲୋପ ହୋଇ ଲାଟଶାସନ ଚାଲିଲା । ଏହା ପରେ କଂଗ୍ରେସ ତଥା ଭାରତ ଇତିହାସରେ ଏକ ଅଭିନବ ଅଧ୍ୟାୟର ସୂତ୍ରପାତ ହେଲା । କଂଗ୍ରେସ ସହଯୋଗ ନୀତି ଛାଡ଼ି ଅସହଯୋଗ ଆଡ଼କୁ ଗତି କଲା । କଂଗ୍ରେସ ତାର ଯୁଦ୍ଧନୀତି ପ୍ରକାଶ କରି କହିଲା ଯେ, ବ୍ରିଟିଶ ସରକାର ତାଙ୍କ ଯୁଦ୍ଧନୀତି ତୁରନ୍ତ ଘୋଷଣା କରନ୍ତୁ ଏବଂ ନାଜୀ କବଳରୁ ରକ୍ଷା କରି ପୃଥିବୀର ରାଜ୍ୟମାନଙ୍କୁ ସ୍ୱାଧୀନତା ଦେବା ଯଦି ବ୍ରିଟିଶ ସରକାରଙ୍କର ଲକ୍ଷ୍ୟ ହୋଇଥାଏ ତାହାହେଲେ ସେହି ନୀତି ପ୍ରୟୋଗ କରି ଭାରତକୁ ଏକ ସ୍ୱାଧୀନ ରାଜ୍ୟ ବୋଲି ଘୋଷଣା କରନ୍ତୁ ।

ଏହା ଫଳରେ ବ୍ରିଟିଶ ସରକାର ବଡ଼ ମୁସ୍କିଲରେ ପଡ଼ିଲେ । ସେମାନଙ୍କ ଯୁଦ୍ଧନୀତି ବୋଲି ଯାହା କୁହା ଯାଇଥିଲା ତାକୁ ବିଶ୍ୱ ଜନତା ଆଗରେ ସ୍ପଷ୍ଟ ଭାବରେ ଘୋଷଣା କରିବା ଓ ସେହି ଅନୁସାରେ କାର୍ଯ୍ୟ କରିବା ବ୍ରିଟିଶ ସରକାରଙ୍କର ଉଦ୍ଦେଶ୍ୟ ନୁହେଁ । ତେଣୁ ସ୍ପଷ୍ଟ କରି ସେ କଥା ନ କହି ସେ ଭିନ୍ନ ନୀତି ଧରିଲେ । ଦୋଷଟା ଓଲଟି ଭାରତ ଉପରେ ଲଦିବେ ବୋଲି ପ୍ରମାଣ କରିବାକୁ ସେ ତାଙ୍କର ପୂର୍ବ ଭେଦଭାବ ମୂଳକ ରାଜନୀତିର ଚାଲ୍ ଖେଳିଲେ । ବଡ଼ଲାଟ ଭାରତରେ ବିଭିନ୍ନ ଦଳ, ବିଭିନ୍ନ

ସମ୍ପ୍ରଦାୟ ଓ ଗୋଷ୍ଠୀ ଭିତରୁ ୫୧ ଜଣ ପ୍ରତିନିଧିଙ୍କୁ ଡାକି ସେମାନଙ୍କ ମତ ଲୋଡ଼ିଲେ । ବ୍ରିଟିଶ ସରକାର ତଥା ବଡ଼ଲାଟ-ଙ୍କର ଏହି ଆଲୋଚନା ଓ ଦେଶୀଯାଷାତରେ ବେଶ୍ ସୁବିଧା ହୋଇଗଲା ।

୧୯୪୦ ଅଗଷ୍ଟ ମାସରେ ବଡ଼ଲାଟ ଭାରତ ପ୍ରତି ବ୍ରିଟିଶ ସରକାରଙ୍କର ନୀତି ବିଷୟରେ ଏକ ଘୋଷଣା ପ୍ରକାଶ କଲେ । ଏହି ଘୋଷଣାରେ ସେହି ସବୁ ପୁରୁଣା କଥାଗୁଡ଼ିକ ଗୋଟି ଗୋଟି କରି ପ୍ରକାଶ ପାଇଲା—କଂଗ୍ରେସ ହାତକୁ କ୍ଷମତା ଦେଲେ ମୁସଲମାନ ଓ ଅନୁନ୍ନତ ସମ୍ପ୍ରଦାୟମାନେ ରାଜି ହେବେ ନାହିଁ, ସରକାର ସଂଖ୍ୟାନ୍ୟୂନ ସମ୍ପ୍ରଦାୟଙ୍କ ସ୍ୱାର୍ଥରକ୍ଷା କରିବା ଦାୟିତ୍ୱ ଛାଡ଼ି ପାରିବେ ନାହିଁ ଇତ୍ୟାଦି ସେହି ପୁରୁଣା କଥା । କଂଗ୍ରେସ ଏହି ପ୍ରସ୍ତାବକୁ ପୂରାପୂରି ଅଗ୍ରାହ୍ୟ କରିଦେଲା ।

ମାତ୍ର କଂଗ୍ରେସ ଏତିକି କରି ଦେଇ ସ୍ଥିର ହୋଇ ବସି ନ ଥିଲା । ବ୍ରିଟିଶ ସରକାରଙ୍କୁ କଂଗ୍ରେସ ଆଉ ଏକ ପ୍ରସ୍ତାବ ଦେଲା ଯେ ଯୁଦ୍ଧଶେଷ ହେବାର ବର୍ଷକ ଭିତରେ ଯଦି ବ୍ରିଟିଶ ସରକାର ଭାରତକୁ ସ୍ୱାଧୀନ ବୋଲି ଘୋଷଣା କରିବେ ଓ ବର୍ତ୍ତମାନ ଶାସନ କାର୍ଯ୍ୟ ଚଳାଇବା ପାଇଁ ଏକ ଅସ୍ଥାୟୀ ସରକାର ହାତରେ ସମସ୍ତ କ୍ଷମତା ଛାଡ଼ିଦେବେ ତାହାହେଲେ କଂଗ୍ରେସ ମିତ୍ରପକ୍ଷ ସାଙ୍ଗରେ ଯୁଦ୍ଧରେ ଯୋଗ ଦେବ ।

ଏହା ପୁନା ପ୍ରସ୍ତାବ ନାମରେ ଖ୍ୟାତ । ମହାତ୍ମା ଗାନ୍ଧୀ ଏହି ପ୍ରସ୍ତାବରେ ରାଜି ନ ହୋଇ କଂଗ୍ରେସରୁ ଅଲଗା ହୋଇଗଲେ । କଂଗ୍ରେସ ଭିତରେ ମଧ୍ୟ ଅନେକ ଲୋକ ଏହି ପ୍ରସ୍ତାବରେ ରାଜି

ହୋଇ ନ ଥିଲେ । ଯାହାହେଉ ବ୍ରିଟିଶ ସରକାରଙ୍କ ପାଖରେ ଭେଦଭାବ ମନ୍ତଟି ଅଛୁ, ସେ ବା କାହିଁକ ଏ ପ୍ରସ୍ତାବରେ କର୍ଣ୍ଣପାତ କରନ୍ତେ ?

ବ୍ରିଟିଶ ସରକାରଙ୍କର ଏହି ନଛୋଡ଼ବନ୍ଧା ନୀତିରେ ଭାରତର ଅନ୍ୟାନ୍ୟ ଦଳ ଏପରିକି ମାନ୍ଦାଦଳ ମଧ୍ୟ ଘୋର ବିରକ୍ତି ପ୍ରକାଶ କରିଥିଲେ । ରାଜନୀତିର ଅନ୍ୟାନ୍ୟ କ୍ଷେତ୍ରରେ ସେମାନଙ୍କର କଂଗ୍ରେସ ନୀତି ଓ ପନ୍ଥା ସଙ୍ଗେ ମତଭେଦ ଥିଲେ ମଧ୍ୟ କଂଗ୍ରେସ ବ୍ରିଟିଶ ସରକାରଙ୍କୁ ଦେଇଥିବା ପ୍ରସ୍ତାବରେ ସେମାନେ ସଂପୂର୍ଣ୍ଣ ଏକମତ ହୋଇ ସେଥିପାଇଁ ପ୍ରକାଶ୍ୟ ଭାବରେ ଆନ୍ଦୋଳନ କରିଥିଲେ । ଫରୱାର୍ଡ ବ୍ଲକ ଓ ଅନ୍ୟ କେତେକ ବାମପନ୍ଥୀ ଦଳ ବ୍ରିଟିଶ ସରକାର ବିରୁଦ୍ଧରେ ଗଣ ଆନ୍ଦୋଳନ ଆରମ୍ଭ କରିବା ପାଇଁ କଂଗ୍ରେସକୁ ନିବେଦନ କରିଥିଲେ । ସବୁଠୁଁ ମଜା କଥା ଭାରତୀୟ କମ୍ୟୁନିଷ୍ଟମାନେ ଏହି ଗଣ ଆନ୍ଦୋଳନ ପାଇଁ ବେଶୀ ଚିତ୍କାର କରିଥିଲେ । ଯାହାହେଉ କଂଗ୍ରେସ ସରକାରର ମତଟେଇରେ ଘୋର ବିରକ୍ତ ହୋଇ ସହଯୋଗରେ ମନୋଭାବ ତ୍ୟାଗ କଲେ । ଭାରତର ରାଜନୈତିକ ଇତିହାସରେ ପୁଣି ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ମହାତ୍ମାଗାନ୍ଧୀ ପୁଣି କଂଗ୍ରେସର ନେତୃତ୍ୱ ନେଲେ ଏବଂ ଭବିଷ୍ୟତ କର୍ମପନ୍ଥାର ଭାର ସଂପୂର୍ଣ୍ଣ ତାଙ୍କ ହାତରେ ଛାଡ଼ି ଦିଆଗଲା । ୧୯୪୦ ରାମଗଡ଼ କଂଗ୍ରେସରେ ପ୍ରତ୍ୟକ୍ଷ ଆନ୍ଦୋଳନର ଏକ ସୂଚନା ଦିଆ ହେଲା । ଗାନ୍ଧିଜୀ ଏହି ଆନ୍ଦୋଳନ ପାଇଁ ଭାରତର ଜନତାଙ୍କୁ ପ୍ରସ୍ତୁତ ହେବା ପାଇଁ ଆହ୍ୱାନ କଲେ । ଆନ୍ଦୋଳନର ପ୍ରକାର ଓ ସମୟ ଘୋଷଣା ସେ ନିଜ

ହାତରେ ରଖିଲେ । ତାପରେ ପ୍ରାଦେଶିକ କଂଗ୍ରେସ କମିଟିମାନ ସତ୍ୟାଗ୍ରହ କମିଟିରେ ପରଣତ ହେଲ । ଯୁଦ୍ଧ ସଂପର୍କରେ କଂଗ୍ରେସ ତାର ମତ ଜନସାଧାରଣଙ୍କ ଭିତରେ ପ୍ରକାଶ କରିବା ପାଇଁ ଏକ ବ୍ୟକ୍ତିଗତ ସତ୍ୟାଗ୍ରହର କର୍ମପନ୍ଥା ଗାନ୍ଧିଜୀ ଘୋଷଣା କଲେ । ଗାନ୍ଧିଜୀ ପ୍ରତ୍ୟକ୍ଷ ଭାବରେ ଏହି ଆନ୍ଦୋଳନର ଦାୟିତ୍ୱ ନେଇ ଚଳାଇଲେ । ହଜାର ହଜାର କଂଗ୍ରେସ କର୍ମୀ ଏହି ସତ୍ୟାଗ୍ରହରେ ଯୋଗ ଦେଇ କାରାବରଣ କଲେ । ଭବିଷ୍ୟତ ବିରାଟ ଗଣ ଆନ୍ଦୋଳନ ପାଇଁ ଏହା ଯେ ଏକ ପରୀକ୍ଷା ତାହା ସେତେବେଳେ ମଧ୍ୟ ସମସ୍ତେ ଭାବି ପାରି ନ ଥିଲେ । ୧୯୪୧ର ଶେଷ ଭାଗକୁ ଏହି ଆନ୍ଦୋଳନ ସ୍ଥଗିତ ରହିଲା । କଂଗ୍ରେସ ନେତା ଓ କର୍ମୀମାନେ ସମସ୍ତେ ଖଲାସ ହୋଇଗଲେ ।

## ୧୯୪୨--

ସେତେବେଳକୁ ଯୁଦ୍ଧର ଗତି ଭାରତ ପକ୍ଷରେ ଉଦ୍‌ବେଗ ଜନକ ହୋଇ ଉଠିଲାଣି । ସେଣେ ଜର୍ମାନୀ ବିଦ୍ୟୁତ୍ ଆକ୍ରମଣରେ ଇଉରୋପର ଛୋଟ ଛୋଟ ରାଜ୍ୟଗୁଡ଼ିକୁ ଗ୍ରାସ କରି ରୁଷିଆର ଶତ ଶତ ସହର ଗୋଟିକ ପରେ ଗୋଟିଏ ଅଧିକାର କରି ନେଇ ଯାଉଛି । କେଉଁ ମୁହୂର୍ତ୍ତରେ ଷ୍ଟାଲିନଗ୍ରେଡ ବା ମସ୍କୋ ସହର ହିଟଲର ହାତରେ ପଡ଼ିବ, ସେଥିପାଇଁ ସମସ୍ତ ପୃଥିବୀ ତଥା ଭାରତ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରୁଛନ୍ତି । ମାତ୍ର ଦୁର୍ଦ୍ଧର୍ଷ ରୁଷ୍ ସୈନ୍ୟବାହିନୀଙ୍କ ଶକ୍ତି ଓ ନୈତିକତା ଅକ୍ଷୁର୍ଣ୍ଣ ରହିଛି । ସେମାନେ ଶୀଘ୍ରରେ ଜର୍ମାନୀକୁ ବିତାଡ଼ିତ କରି ରୁଷକୁ ପୂର୍ବବତ ସ୍ୱାଧୀନ କରି ପାରିବେ ବୋଲି

ହୃତ ଅଣ୍ଡା ପୋଷଣ କରୁଛନ୍ତି । ଷ୍ଟାଲିନଗ୍ରେଡ ସହରରେ ପ୍ରତି ଗଳି, ପ୍ରତି ଘର ପାଇଁ ରୁଷ ସୈନ୍ୟ ଓ ଜର୍ମାନୀ ସୈନ୍ୟଙ୍କ ଭିତରେ ପ୍ରାଣାନ୍ତକ ସଂଗ୍ରାମର ସଂବାଦ ଆସୁଛି । ଏଣେ ଜାପାନ ପ୍ରଶାନ୍ତ ମହାସାଗରର ଦ୍ୱୀପପୁଞ୍ଜକୁ ବିଦ୍ୟୁତବେଗରେ ପରାଧୀନ କରି ଇଣ୍ଡୋଚୀନ, ଶ୍ୟାମ ଓ ମାଲୟ ପୂର୍ବାପର ଦଖଲ କରି ସାରିଲଣି । ବର୍ମାରେ ବ୍ରିଟିଶ ସୈନ୍ୟ କୌଶଳପୂର୍ଣ୍ଣ ପଛଘୁଞ୍ଚା ଦେଇ ଚାଲି ଆସୁଛନ୍ତି ।

ଏହି ସାମରିକ ବିପର୍ଯ୍ୟୟରେ ସମଗ୍ର ବ୍ରିଟିଶ ଜାତି ତାଙ୍କର ପୂର୍ବ ସମ୍ମାନ ଓ ଗୌରବ ହରାଇଛନ୍ତି । ବିଚକ୍ଷଣ ଚର୍ଚ୍ଚିଲ ଇଂରେଜ ଜାତିର ନୈତିକ ଶକ୍ତିକୁ ନିଜର ଅସାଧାରଣ ବାଗ୍ମିତା ବଳରେ ରକ୍ଷା କରି ପାରିଛନ୍ତି । ମାତ୍ର ବ୍ରିଟିଶ ଜାତିର ସାମରିକ ଶକ୍ତିରେ ଭାରତବାସୀଙ୍କର ଆଉ ବିଶ୍ୱାସ ନାହିଁ । ଜାପାନ ଭାରତ ଆକ୍ରମଣ କଲେ ନିରସ୍ତ୍ର ଭାରତବାସୀ କପରି ତାର ପ୍ରତିରୋଧ କରିବେ, କପରି ନିଜକୁ ସଂଗଠିତ କରିବେ ତାହା ଭାରତବାସୀ ନିତାନ୍ତ ଉଦ୍‌ବେଗ ଓ ଆତଙ୍କରେ ଚିନ୍ତା କରୁଅଛନ୍ତି । ଏଣେ ଜାପାନ ଭାରତ ଆକ୍ରମଣ କଲେ ଭାରତରୁ ଯେପରି କୌଣସି ସାହାଯ୍ୟ ନ ପାଏ ସେଥିପାଇଁ ସବୁ ଡଙ୍ଗା, ବୋଟ, ସାଇକେଲ ଜବତ କରି ନେଇ ଏବଂ ଧାନ ଚାଉଳଆଦି ନିଜ ହାତରେ ରଖିବାକୁ ଉଦ୍ୟମ କରି ସରକାର ଘୋର ଆତଙ୍କ ପକାଇ ଦେଇ ସାରିଲେଣି । ଯେ କୌଣସି ଅବସ୍ଥାରେ ବ୍ରିଟିଶ ଶକ୍ତି ଉପରେ ଭାରତବାସୀଙ୍କର କୌଣସି ଆସ୍ଥା ନାହିଁ ।

ଏ ସଙ୍କଟ ମୁହୂର୍ତ୍ତରେ କଂଗ୍ରେସ ଭାରତର ଜନତାଙ୍କୁ କିପରି ନେତୃତ୍ୱ ଦେବ ସେଥିପାଇଁ ସମସ୍ତେ ଉଦ୍‌ବିଗ୍ନ ହୋଇ

ରହିଁ ରହିଲେ । ଗାନ୍ଧିଜୀଙ୍କୁ ସଂପୂର୍ଣ୍ଣ ଭାବରେ କଂଗ୍ରେସର ନେତୃତ୍ୱ ଦିଆଗଲା । ନିରସ୍ତ୍ର ୪୦ କୋଟି ଭାରତବାସୀଙ୍କୁ ଗାନ୍ଧିଜୀ ତାଙ୍କର ଅହିଂସ ଅସହଯୋଗର ପନ୍ଥା ପୁଣି ଦେଖାଇଲେ । ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଏଲାହାବାଦ ପ୍ରସ୍ତାବରେ ସମସ୍ତ ଭାରତବାସୀଙ୍କୁ ଜାପାନୀ ଆକ୍ରମଣ ବିରୁଦ୍ଧରେ ଅହିଂସ ଭାବରେ ଅସହଯୋଗ କରିବାକୁ ନିର୍ଦ୍ଦେଶ ଦେଲେ । ଜାପାନ ଭାରତ ଆକ୍ରମଣ କଲେ ତାକୁ କୌଣସିପ୍ରକାର ସହଯୋଗ ବା ସାହାଯ୍ୟ ଦିଆଯିବ ନାହିଁ ଏବଂ ଅହିଂସ ଭାବରେ ସେହି ଆକ୍ରମଣର ପ୍ରତିରୋଧ କରିବାକୁ ହେବ । ମାତ୍ର ରୁଷିଆ ଦେଶରେ ଜର୍ମାନୀ ଆକ୍ରମଣବେଳେ ରୁଷ ସରକାର ସେଠାର ସମ୍ପତ୍ତି ବାଡ଼ି ଓ ଘରଦ୍ୱାର ପୋଡ଼ିଜାଳି ଦେଇ ଚାଲିଯିବାର ଯେଉଁ ନୀତି ଅବଲମ୍ବନ କରୁଛନ୍ତି ସେହି ନୀତିକୁ ଭାରତରେ ପ୍ରୟୋଗ କରିବା ପାଇଁ ଗାନ୍ଧିଜୀ ରାଜି ନ ଥିଲେ । ଏହି ପୋଡ଼ିଜାଳି ଦେବା ନୀତିର ସେ ଘୋର ବିରୋଧୀ ଥିଲେ ।

## କ୍ରିପସ୍ ପ୍ରସ୍ତାବ

ବ୍ରିଟିଶ ସରକାରର ଏହି ସାମରିକ ବିପର୍ଯ୍ୟୟରେ କେବଳ ଭାରତବାସୀ ନୁହନ୍ତି ପୃଥିବୀର ଅନ୍ୟାନ୍ୟ ଦେଶ ଏବଂ ବ୍ରିଟେନର ସ୍ୱାଧୀନ ମତବାଦୀ ଲୋକେ ବ୍ରିଟିଶ ସରକାର ନୀତିର ଘୋର ସମାଲୋଚନା କଲେ । ଜାପାନର ଭାରତ ଆକ୍ରମଣକୁ ବ୍ରିଟେନ ପ୍ରତିରୋଧ କରି ପାରିବ ନାହିଁ, ସେ କଥା ପୃଥିବୀର ବୁଦ୍ଧିମାନ୍, ରାଜନୀତିଜ୍ଞମାନଙ୍କର ଦୃଢ଼ଧାରଣା ହୋଇଗଲା । ବ୍ରିଟିଶ ସରକାର ଏଭଳି ଅବସ୍ଥାରେ ପୂର୍ବପରି ଅଚଳ ଅବସ୍ଥାକୁ କାଏମ ରଖି

ସାଉମନଙ୍କ ସ୍ଥଳପିବାକୁ ଅଉ ସାହସ ହେଲେ ନାହିଁ । କନ୍ତୁ ସଗ୍ଧରପରେ ବଲାତର ସବୁଦଳ ମିଶି ଏକ ପ୍ରସ୍ତାବ ଦେଲେ । ଏହାହିଁ କିପସ୍ ପ୍ରସ୍ତାବ ନାମରେ ଖ୍ୟାତ । ବ୍ରିଟିଶ ଯୁଦ୍ଧମନ୍ତ୍ରୀ ପରିଷଦରେ ନୂଆ ହୋଇ ଯୋଗ ଦେଇଥିବା ସାମ୍ୟବାଦୀ କିପସ୍ ସାହେବ ସେହି ପ୍ରସ୍ତାବକୁ ଧେନ ଭାରତକୁ ଆସିଲେ । ଭାରତୀୟ ଜାତିର ଆଶା ଓ ଆକାଂକ୍ଷା ପ୍ରକାଶ ପାଇଲା, କେତେ କଳ୍ପନାଜଳ୍ପନା ଚାଲିଲା । କିପସ୍ ସାହେବ ଭାରତର ବଡ଼ ବଡ଼ ଦଳଙ୍କୁ ଡାକି ଏହି ପ୍ରସ୍ତାବଟି ଦେଲେ । ପ୍ରସ୍ତାବଟିରେ ଭାରତର ଭବିଷ୍ୟତ ଶାସନଖସଡ଼ା ତଥା ଅସ୍ଥାୟୀ ଜାତୀୟ ସରକାର ଗଠନ ପାଇଁ ବ୍ୟବସ୍ଥା ଥିଲା । ଭବିଷ୍ୟତ ଶାସନଖସଡ଼ାରେ ଗଡ଼ଜାତମାନଙ୍କୁ ଖାସ ଭାରତରୁ ଅଲଗା କରିଦିଆହୋଇ ପ୍ରଦେଶମାନଙ୍କ ଭିତରୁ ଯେଉଁମାନେ ଚାହିଁବେ ସେମାନଙ୍କୁ ଅଲଗା ହୋଇଯିବାର କ୍ଷମତା ଦିଆହୋଇଥିଲା । ଏକ ଶାସନବିଧାୟକ ସଭା ( Constituent Assembly) ହାତରେ ଭାରତର ଭବିଷ୍ୟତ ଶାସନଖସଡ଼ା ରଚନା କରିବାର ଭାର ଥିଲା । ସେହି ଶାସନଖସଡ଼ାକୁ ମାନି ବ୍ରିଟିଶସରକାର କାମ କରିବେ । ଭାରତ ଚାହିଁଲେ ବ୍ରିଟିଶ ସରକାର ସଙ୍ଗେ ରହିପାରେ ଏବଂ ଅଲଗା ହୋଇଯାଇ ପାରେ । ବର୍ତ୍ତମାନ ପାଇଁ ବଡ଼ଲାଟଙ୍କ ଶାସନ ପରିଷଦ ସବୁଦଳର ସଭ୍ୟଙ୍କୁ ନେଇ ଗଠିତ ହେବ ଏବଂ ଯୁଦ୍ଧ ଓ ବୈଦେଶିକବିଭାଗ ଛଡ଼ା ଅନ୍ୟାନ୍ୟ ସବୁ ବିଭାଗ ସେମାନଙ୍କ ହାତରେ ରହିବ । କଥା-ବାର୍ତ୍ତାରେ କ୍ରିପସ୍ ସାହେବ କଂଗ୍ରେସ ନେତାମାନଙ୍କୁ ଜବାବ ଦେଲେ ଯେ ଏହି ଶାସନ ପରିଷଦ ପ୍ରକୃତରେ ଏକ ଜାତୀୟ ସରକାର ହେବ ଏବଂ ଇଂଲଣ୍ଡରେ ପାର୍ଲିଆମେଣ୍ଟ ସଙ୍ଗେ ସମ୍ରାଟଙ୍କ ଯେଉଁଭଳି ସମ୍ବନ୍ଧ ବଡ଼ଲାଟଙ୍କର ଏହି ଅସ୍ଥାୟୀ

ଜାତୀୟ ସରକାର ସଙ୍ଗେ ସେହିଭଳି ସମ୍ବନ୍ଧ ରହିବ । ଏହି ଇଭାବରେ ପ୍ରସ୍ତାବର ଅନ୍ୟାନ୍ୟ ଅଙ୍ଗଗୁଡ଼ିକୁ ସାମୟିକ ବାଦ୍ ଦେଇ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବଟିକୁ ଗ୍ରହଣ କରିବା ଦିଗରେ କ୍ରିପସ୍‌ଙ୍କ ସଙ୍ଗେ ଆଲୋଚନା ଚଳାଇଲେ । ମାତ୍ର ପରେ କ୍ରିପସ୍ ଟେଣ୍ଡୁ ନାଅଁଗିଲା ଜାଠ ନେତା ଚର୍ଚ୍ଚିଲ୍ ସାହେବଙ୍କଠାରୁ କଡ଼ା ଜବାବ ପାଇ ତାଙ୍କ ଜବାବ୍ ଫେରାଇ ନେଲେ । ଫଳରେ କଂଗ୍ରେସ ଏହି କ୍ରିପ୍ସ ପ୍ରସ୍ତାବଟିକୁ ପୂରାପୂରି ଅଗ୍ରାହ୍ୟ କରିଦେଲେ ଏବଂ କ୍ରିପସ୍ ସାହେବ ବାଟେ ବାଟେ ବିଲାତ ଫେରିଯାଇ ଅଳ୍ପଦିନ ପରେ ଯୁଦ୍ଧମନ୍ତ୍ରୀମଣ୍ଡଳରୁ ତଡ଼ା ଖାଇ ଜଡ଼ାଜାହାଜ ଉଥରି ବିଭାଗର ମନ୍ତ୍ରୀ ହୋଇ ରହିଲେ । ଅଥଚ ବ୍ରିଟିଶ ସରକାର ଆମେରିକା ଓ ଅନ୍ୟାନ୍ୟ ମିତ୍ର ରାଷ୍ଟ୍ରମାନଙ୍କ ନିକଟରେ ପ୍ରଚାର ଚଳେଇଲେ ଯେ ବ୍ରିଟିଶ ସରକାର ପୂରା କ୍ଷମତା ଛାଡ଼ି ଦେବାକୁ ପ୍ରସ୍ତୁତ ଥିଲେ; ମାତ୍ର ଭାରତବାସୀ ବିଭିନ୍ନ ଦଳମାନେ ଏକ ହୋଇ ପାରିଲେ ନାହିଁ । ସେମାନେ ଅଦ୍ଭୁତ ପ୍ରଚାର କଲେ ଯେ କଂଗ୍ରେସ ଏହି ପ୍ରସ୍ତାବଟି ଗ୍ରହଣ କରିବାକୁ ରାଜି ହୋଇଥିଲେ । ମାତ୍ର ଗାନ୍ଧୀଜୀ ଶେଷରେ ମନା କରି ଦେବାରୁ କଂଗ୍ରେସ ଅଗ୍ରାହ୍ୟ କରିଦେଲା । ଏହିଭଳି ମିଥ୍ୟା ଓ ଅଭିସନ୍ଧିମୂଳକ ପ୍ରଚାରରେ ବ୍ରିଟିଶ ସରକାର ନିଜର ସଦିଚ୍ଛା ପ୍ରମାଣ କରିବାର ଉଦ୍ୟମ କଲେ । ଭାରତ ର ଅର୍ଥ ଓ ଜେଜେଙ୍କ 'କୋହିନୁର' ଦେଶଦ୍ରୋହୀ ଭାରତୀୟଙ୍କ ସହାୟତାରେ ଏହି ପ୍ରଚାର ଚାଲିଲା ।

# "ଭାରତ ଛାଡ଼"

ମାତ୍ର ଭାରତରେ ଏହାର ପରିଣାମ ବଡ଼ ଭୟାବହ ହୋଇ ଉଠିଲା । ଚାରିଆଡ଼େ ଘୋର ନୈରାଶ୍ୟ ଓ ବିରକ୍ତି ପ୍ରକାଶ ପାଇଲା । ଇଂଲଣ୍ଡ ଓ ଭାରତ ଭିତରେ ସମ୍ପର୍କ ଅତି ତିକ୍ତ ହୋଇ ଉଠିଲା । ଗତ ଅନେକ ବର୍ଷ ଧରି ଏଭଳି ତିକ୍ତତା କେବେ ପ୍ରକାଶ ପାଇ ନ ଥିଲା । ସେତେବେଳକୁ ଷ୍ଟାଲିନଗ୍ରାଡର ଅବସ୍ଥା ଘୋର ସଂକଟାପନ୍ନ । ପ୍ରତିମୁହୂର୍ତ୍ତରେ ଜର୍ମାନ୍ ସୈନ୍ୟ ଷ୍ଟାଲିନଗ୍ରାଡ୍ ଦଖଲ କରି କକେସସ୍ ଅଡ଼କୁ ମାଡ଼ି ଆସିବାର ଆଶଙ୍କା ହେଉଥିଲା । ଉତ୍ତର ଆଫ୍ରିକାରେ ଟୋବ୍ରୁକର ପତନ ହୋଇ ସାରିଲାଣି । ଏଲ୍-ଏଲାମେନଠାରେ ବହୁ କଷ୍ଟରେ ବ୍ରିଟିଶ ସୈନ୍ୟ ଜର୍ମାନୀ ସୈନ୍ୟଙ୍କୁ ଅଟକାଇ ରଖିଅଛନ୍ତି । ଏଣେ ଜାପାନ ବର୍ମା ପୁରାପୁରି ଦଖଲ କରି-ସାରି ଭାରତର ଦୁଆରମୁହଁରେ ଆସି ଠିଆ ହେଲାଣି । ବ୍ରିଟିଶ ସୈନ୍ୟ ବର୍ମାରୁ ପଛଘୁଞ୍ଚା ଦେଇ ଚାଲି ଆସିଲେଣି । ଚାରିଆଡ଼େ ଜନରବ ଯେ ତେଣୁ ଉତ୍ତରପଟେ ଜର୍ମାନୀ କକେସସ୍ ବାଟ ଦେଇ ଓ ଏଣେ ଜାପାନ ବର୍ମାବାଟେ ଏକାବେଳକେ ଭାରତ ଉପରେ ଚଢ଼ି ଆସି ଆକ୍ରମଣ ଚଳାଇବେ । ଏହି ଦ୍ୱିଠ ଆକ୍ରମଣକୁ ପ୍ରତିରୋଧ କରି ଭାରତବାସୀଙ୍କୁ ଧ୍ୱଂସ ମୁଖରୁ ରକ୍ଷା କରିବାର ଶକ୍ତି ବ୍ରିଟିଶ ସରକାରର ନାହିଁ ବୋଲି ଭାରତବାସୀଙ୍କର ଦୃଢ଼ ଧାରଣା ହୋଇଯାଇଥିଲା । ବରଂ ଶ୍ୟାମ, ମାଳୟ ଓ ବର୍ମାର ଲୋକଙ୍କୁ ଅସହାୟ

ଅବସ୍ଥାରେ ପକାଇ ନିଜେ ସେଠାରୁ ଯେ ଭଲ ଖସି ଆସିଥିଲେ ଭାରତରେ ସେହିପରି କରିବେ ବୋଲି ସମସ୍ତେ ବିଶ୍ୱାସ କରି ନେଲେଣି । ପୁଣି ଶତ୍ରୁକୁ ସବୁ ସୁବିଧାରୁ ବଞ୍ଚିତ କରିବା ନାମରେ ଭାରତର ଚାରିଆଡ଼େ ଯେଉଁ ନିଷ୍ଠୁର ଓ ନିର୍ବୋଧ ବ୍ୟବସ୍ଥାମାନ ବଡ଼ଲାଟ ଓ ଲାଟମାନଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶରେ କାର୍ଯ୍ୟକାରୀ ହେଲା ଏବଂ ଭାରତର ସମ୍ବାଦପତ୍ର ଓ ଜନମତକୁ ଦଳି ଦେବାକୁ ଯେଉଁ ବିରାଟ ଉଦ୍ୟମ ହେଲା ତାହା ଭାରତର ସହର ତଥା ପଲ୍ଲୀର କୋଟି କୋଟି ହୃଦୟରେ ଆତଙ୍କ ସଞ୍ଚାର କରି ଦେଲା । ଭାରତର ଜନତା ସେ ମୁହୂର୍ତ୍ତରେ ଯେଉଁ ଆତଙ୍କ ଓ ଭୟ ଓ ଉଦ୍‌ବେଗରେ କାଳ କାଟିଛନ୍ତି ତାହା ସେମାନେ କେବେ ହେଲେ ଭୁଲି ପାରିବେ ନାହିଁ । ଏ ଅବସ୍ଥାରେ ମଧ୍ୟ ବ୍ରିଟିଶ ସରକାର ନିଜ ହାତରୁ କ୍ଷମତା ଛାଡ଼ି ଦେବା ତ ଦୂରର କଥା ସେହି କ୍ଷମତାକୁ ତଥା କଥିତ ଲୋକ ପ୍ରତିନିଧିଙ୍କଠାରୁ ଛଡ଼ାଇ ନେଇ ସେମାନଙ୍କୁ ସଶୀକ୍ରୁଣ୍ଣେର କରି ନିଜେ ଗୋରାହାକିମ-ମାନଙ୍କ ହାତରେ ସମସ୍ତ କ୍ଷମତା ନ୍ୟସ୍ତ କରି ଦେଇଥିଲେ । ତେଣୁ ଏହିଭଳି ଆତଙ୍କ, ଭୟ, ଉଦ୍‌ବେଗ ଓ ଦୁଃଖ ମୁହୂର୍ତ୍ତରେ ଦଟେନ ଓ୍ୱାର୍ଧା ଆଶ୍ରମରୁ ଡାକ ଶୁଭିଲା "ଭାରତ ଛାଡ଼" ।

ଡାକ ଦେଲେ ସେନାପତି ଗାନ୍ଧୀ ।

## ଐତିହାସିକ ଅଗଷ୍ଟ ପ୍ରସ୍ତାବ

ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ବୋଷଙ୍କ ଭାଷାରେ କହିଲେ "ଭାରତ ଛାଡ଼" ଏହି ଦୁଇଟି ଶବ୍ଦରେ ୪୦ କୋଟି ଭାରତ ଜନତା ତାଙ୍କ ପ୍ରାଣର ଭାଷା ଗାନ୍ଧୀଜୀଙ୍କ ମୁଖରେ ପ୍ରକାଶ କଲେ । ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ କୋଟି କୋଟି ପ୍ରାଣରେ ଏହା ଆଶା

ଓ ସାହସ ସଞ୍ଚାର କଲା । ଆତଙ୍କିତ, ଉଦ୍‌ବିଗ୍ନ ଜନତା ମୁଖରେ ଏହା ଆନନ୍ଦର ରେଖା ଫୁଟାଇଲା । "ଭାରତ ଛାଡ଼" ପ୍ରସ୍ତାବ ପ୍ରକାଶ କଲା ବେଳକୁ ଗାନ୍ଧୀଜୀଙ୍କ ହୃଦୟରେ ଜଳୁଥିଲା ନିଆଁ । ଭାରତ ଛାଡ଼ି ଯିବାପାଇଁ ଗାନ୍ଧୀଜୀ ଇଂରେଜ ସରକାରକୁ ଆଉ ଅନୁରୋଧ କରିବାକୁ ଘୃଣା ବୋଧ କରିଥିଲେ । ଏଥିପାଇଁ ଇଂରେଜ ସରକାରକୁ ସମୟ ମଧ୍ୟ ଦେବାକୁ ଚାହୁଁ ନ ଥିଲେ । ହିନ୍ଦୁ ମୁସଲମାନ ଏକତା ଆସିବା ପର୍ଯ୍ୟନ୍ତ ସେ ତାଙ୍କ ନିଷ୍ପତ୍ତିକୁ ସ୍ଥଗିତ ରଖିବାକୁ ଚାହୁଁ ନ ଥିଲେ । ଭାରତବାସୀ ନିଜକୁ ରକ୍ଷା କରିବା ପାଇଁ ନିଜ ହାତରେ ଭାରତର ଶାସନଭାର ଗ୍ରହଣ କରିବା ଏତେ ଜରୁରି ହୋଇ ପଡ଼ିଲା ଯେ ଆଉ କୌଣସି ସର୍ତ୍ତ, କୌଣସି ବାହାନାରେ କ୍ଷମତା ହସ୍ତାନ୍ତର କରିବାରେ ବିଳମ୍ବ କରିବା କଥା ଗାନ୍ଧୀଜୀଙ୍କ କଳ୍ପନାକୁ ଆସି ପାରି ନ ଥିଲା । ତେଣୁ ବିପ୍ଳବୀ ଗାନ୍ଧୀ ସ୍ପଷ୍ଟ ଭାଷାରେ ପ୍ରକାଶ କଲେ ଯଦି ଭାରତ ନ ଛାଡ଼ ତେବେ ଆମେ ଚୁପ ହୋଇ ଯାଇ ପାରିବୁ ନାହିଁ । ଭାରତବ୍ୟାପୀ ଏକ ବିରାଟ ଗଣଆନ୍ଦୋଳନ ଆରମ୍ଭ କରି କ୍ଷମତା ଛାଡ଼ି ଦେବାପାଇଁ ଇଂରେଜ ସରକାରକୁ ବାଧ୍ୟ କରିବୁ । ତା ନ ହେଲେ ଆମର ରକ୍ଷା ନାହିଁ । ଆମେ ବାଘ ମୁହଁରୁ ଯାଇ ସିଂହ ମୁହଁରେ ପଡ଼ିବୁ । ଗାନ୍ଧୀଜୀଙ୍କ କଳମରୁ ସେତେବେଳେ ଭାଷା ବାହାରୁ ନ ଥିଲା —ବାହାରୁ ଥିଲା ଅଗ୍ନି । ଯେଉଁ ଅଗ୍ନିବୃଷ୍ଟିକୁ ଅପେକ୍ଷା କରି କରି ଶେଷରେ ଅଧୀର ହୋଇ ନେତାଜୀ ସୁଭାଷଚନ୍ଦ୍ର ଭାରତ ଛାଡ଼ି ଚାଲିଗଲେ ।

ସେତେବେଳେ ଗାନ୍ଧୀଜୀ ସବୁ ବିପଦ, ସବୁ ବାଧାବିଘ୍ନ ଅସୁବିଧା ପାଇଁ ପ୍ରସ୍ତୁତ ଥିଲେ । ବ୍ରିଟିଶ ସରକାର ଚାଲିଯିବା ପରେ ଓ ଜାତୀୟ ସରକାର ଗଠିତ ହେବା ଭିତରେ ଯଦି ଅରାଜକତା

ହୁଏ, ବର୍ତ୍ତମାନର ଶୃଙ୍ଖଳିତ ଅରାଜକତା ଅପେକ୍ଷା ଗାନ୍ଧୀଜୀ ସେହି ଅରାଜକତାକୁ ମଧ୍ୟ ଅଭିନନ୍ଦନ କରିବେ ବୋଲି ସ୍ପଷ୍ଟ ଭାଷାରେ ପ୍ରକାଶ କରିଥିଲେ । ସେ ଲେଖିଥିଲେ, "ପ୍ରକାଶ୍ୟ ବିଦ୍ରୋହ" । ଏହି ବିଦ୍ରୋହରେ କେବଳ କାରାବରଣ କରିବା ଯଥେଷ୍ଟ ନୁହେଁ । ତା ଅପେକ୍ଷା ଅଧିକ ତ୍ୟାଗ ଓ ଯନ୍ତ୍ରଣା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।

ଜେଲ ବାହାରେ ଓ ଜେଲ ଭିତରେ ମଧ୍ୟ ଏହି ଆନ୍ଦୋଳନ ଚାଲିବ । ଖଦି କର୍ମୀ ଓ ହରିଜନ କର୍ମୀମାନଙ୍କୁ ଏଥିରେ ଯୋଗ ଦେବାପାଇଁ ଆହ୍ୱାନ କରାଯିବ । ମାତ୍ର ଏହି ଆନ୍ଦୋଳନ ପୂରାପୂରି ଅହିଂସ ଭାବରେ ଚାଲିବ ଏବଂ ଏଥିରେ କୌଣସି ଗୋପନୀୟତାର ସ୍ଥାନ ରହିବ ନାହିଁ । "ଭାରତ ଛାଡ଼" ପ୍ରସ୍ତାବ ଗୃହୀତ ନ ହେଲେ ଯେଉଁ ଗଣଆନ୍ଦୋଳନ ଗାନ୍ଧୀଜୀ ଆରମ୍ଭ କରିବେ ବୋଲି ଘୋଷଣା କଲେ ତାହାର କୌଣସି ନିର୍ଦ୍ଦିଷ୍ଟ କର୍ମପନ୍ଥା ପ୍ରକାଶ ନ କଲେ ମଧ୍ୟ କେତେକ ସୂଚନା ଗାନ୍ଧୀଜୀଙ୍କ ପ୍ରବନ୍ଧମାନଙ୍କରୁ ମିଳିଥିଲା । ଯାହାହେଉ "ଭାରତ ଛାଡ଼" ଓ ଗଣଆନ୍ଦୋଳନଭାବ ଭାରତର କୋଟି କୋଟି ପ୍ରାଣରେ ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ଆଣି ଦେଇଥିଲା । ଏଣେ ଭାରତ ଜନତାଙ୍କ ଭିତରେ ଗଣଆନ୍ଦୋଳନ ପ୍ରସ୍ତାବରେ ଯେତିକି ଉତ୍ସାହ ଓ ଉଦ୍ଦୀପନା ପ୍ରକାଶ ପାଇଲା, ତେଣେ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାର ଓ ତାଙ୍କ ପାଳିତ ଅମଲାତାନ୍ତ୍ରିକ ଭାରତ ସରକାରଙ୍କ ହୃଦୟରେ ସେତିକି ଆତଙ୍କ ସଞ୍ଚାରିତ ହେଲା । ସ୍ୱାଧୀନତା ପ୍ରତି ଭାରତ ଜନତାର ଏପରି ବ୍ୟାକୁଳତା ଏପରି ପ୍ରାଣମୁର୍ଚ୍ଛାଭାବ ବ୍ରିଟିଶ ସରକାର ଆଉ କେବେ ଦେଖି ନ ଥିଲେ । ଭାରତରକ୍ଷା ଆଇନର ବଜ୍ରାଘାତ ତଳେ ଭାରତର ସ୍ୱାଧୀନ ଜନମତ, ସମ୍ପାଦକମାନଙ୍କୁ ଏ ଭଳି ଦୃଢ଼ ବନ୍ଧନରେ ବାନ୍ଧି ରଖିଥିଲା ଯେ,

ଇଚ୍ଛିନ୍ତୁ କେହି ମୁକ୍ତ ପାରିବ ବୋଲି ଆଶା ଶାସକ ଜାତର ନ ଥିଲା । ମାତ୍ର ଏପରି ଉତ୍ସାହ ବ୍ୟାକୁଳତା ପୁଣି କେମିତି ପ୍ରକାଶ ପାଉଣ୍ଡ ? ସ୍ୱାଧୀନତା ପ୍ରତି ଭାରତର ଏହି ବ୍ୟାକୁଳତାକୁ ବିଶ୍ୱ-ଜନମତ ନିକଟରୁ କପଟ ଛପେଇ ରଖିବେ ସେଥିପାଇଁ ନାନା ନୀତ ଓ ଅଭିସନ୍ଧିମୂଳକ ପନ୍ଥାମାନ ଅବଲମ୍ବନ କରିଲେ । "ଭାରତ ଛାଡ଼" ପ୍ରସ୍ତାବ ଓ ଗଣଆନ୍ଦୋଳନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମ୍ବନ୍ଧରେ ଗାନ୍ଧିଜୀଙ୍କ ପ୍ରବନ୍ଧ ଓ ପ୍ରଶ୍ନୋତ୍ତରମାନଙ୍କୁ ପୂରାପୂରି ପ୍ରକାଶ କରିବାର ସୁଯୋଗ ଯେପରି ନ ମିଳିବ ବ୍ରିଟିଶ ସରକାର ଅତ ନିଷ୍ଠୁର ଭାବରେ ତା କଲେ । ପରନ୍ତୁ ଗଣଆନ୍ଦୋଳନର ଅପବ୍ୟାଖ୍ୟା କରି ଆମେରିକା ଓ ଇଂଲଣ୍ଡରେ ଯେଉଁ ପ୍ରଚାର କରାଇଥିଲେ ଏବଂ ତାର ପ୍ରତିକ୍ରିୟା ସ୍ୱରୂପ ଯେଉଁ ସବୁ ସମ୍ବାଦ ପତ୍ରମାନ "ଭାରତ ଛାଡ଼" ପ୍ରସ୍ତାବକୁ ସମାଲୋଚନା କରି ଲେଖାମାନ ପ୍ରକାଶ କରିଥିଲେ ତାକୁ ସବୁ ନିଜ ସମ୍ବାଦବିଭାଗ ଜରିଆରେ ବହୁ ସଂଖ୍ୟାରେ ଭାରତକୁ ଆମଦାନୀ କଲେ । ଆମେରିକା ଓ ଇଂଲଣ୍ଡର ଯେଉଁ ସଂବାଦ ପତ୍ର, ଯେଉଁ ଜନ ନେତାମାନେ ଏହି ପ୍ରସ୍ତାବ ସପକ୍ଷରେ ମତ ପ୍ରକାଶ କରିଥିଲେ ସେହି ସଂବାଦଗୁଡ଼ିକ ଭାରତକୁ ଯେ ଭଳି ନ ଆସିପାରିବ ତାର ସମସ୍ତ ବ୍ୟବସ୍ଥା କଲେ । ଭଡ଼ାଟିଆ ଲେଖକଙ୍କ ସାହାଯ୍ୟରେ ଭାରତର ଆଶା ଆକାଂକ୍ଷା ବିରୁଦ୍ଧରେ ପୁସ୍ତକମାନ ଲେଖାଇ ବିତରଣ କଲେ । ଭାରତରେ ଭାରତୀୟମାନଙ୍କ ସାହାଯ୍ୟରେ "ଭାରତ ଛାଡ଼" ପ୍ରସ୍ତାବ ଓ ଗଣଆନ୍ଦୋଳନ ବିରୁଦ୍ଧରେ ପ୍ରଚାର କରିବା ପାଇଁ ଅଭିନବ ଉପାୟମାନ ଖଞ୍ଜିଲେ । ବିପୁଳ ଅର୍ଥ ବ୍ୟୟରେ 'ଜୋ ହୁକୁମବାଲ' ଭାରତୀୟମାନଙ୍କୁ ନେଇ ଜୋ-ହୋଇଥିବା ଜାତୀୟ ଯୁଦ୍ଧସାହାଯ୍ୟ ଦଳଙ୍କୁ କଂଗ୍ରେସ ପ୍ରସ୍ତାବ

ବିରୁଦ୍ଧରେ ଜନମତ ସଂଗ୍ରହ କରିବା କାମରେ ଲଗାଇ ଦିଆହେଲା । ସେମାନଙ୍କ ନିକଟକୁ ବ୍ରିଟିଶ ଚିଫ୍ ସେକ୍ରେଟରୀମାନଙ୍କଠାରୁ ଏହି ମର୍ମରେ ନିର୍ଦ୍ଦେଶମାନ ଅସିଲା । ଭାରତର ଅନ୍ୟାନ୍ୟ ସାଂପ୍ରଦାୟିକ ଦଳର ନେତାମାନଙ୍କ ଠାରୁ ଏହା ବିରୁଦ୍ଧରେ ବକ୍ତୃତମାନ ସଂଗ୍ରହ କରାଗଲା । ଏମ୍, ଏନ୍ ରାୟଙ୍କ ଦଳକୁ ଶ୍ରମିକଙ୍କ "ନୈତିକ ଶକ୍ତି ସଞ୍ଚାର ରଖିବା" ବାହାନାରେ ମାସକୁ ୧୩୦୦୦ ଟଙ୍କା ଦିଆଗଲା । ଭାରତୀୟ କମ୍ୟୁନିଷ୍ଟ ଦଳଙ୍କ ଉପରୁ କଟକଣା ଉଠାଇ ଦିଆହେଲା । ବାଧାହୀନ ଭାବରେ କାମ କରିବାକୁ ସେମାନଙ୍କୁ ସୁବିଧା ଦିଆହେଲା ।

ମାତ୍ର ଭାରତର ଜନତା, ଯୁବକ ଓ ଛାତ୍ର ଏଥିରେ ତିଳେମାତ୍ର ହତୋତ୍ସାହ ହେଲେ ନାହିଁ । କାରଣ ସେମାନେ ଜାଣନ୍ତି ଏହି ବ୍ରିଟିଶ ସରକାର ଇଙ୍ଗଲଣ୍ଡର ସ୍ୱାଧୀନତା ଆନ୍ଦୋଳନକୁ ଦବେଇବା ପାଇଁ ଓ୍ୱାଫ୍ଟିଷ୍ଟ ଦଳର ଭୂତପୂର୍ବ ନେତା ଜଗଲୁଲ ପାଶାଙ୍କ ବ୍ୟକ୍ତିଗତ ଚରିତ୍ରକୁ କଳଙ୍କିତ କରି ଏକ ଜାଲ୍ ଚିଠି ପ୍ରକାଶ କରିଥିଲେ । ଏହି ବ୍ରିଟିଶ ସରକାର ଅଇରଲାଣ୍ଡ ସ୍ୱାଧୀନତାର ସଂଗ୍ରାମକୁ ଦଳିଦେବାକୁ ସେଠାର ପ୍ରୋଟେଷ୍ଟାଣ୍ଟ ଦଳକୁ କାଥଲିକ୍ ସିନଫେନ୍ ବିରୁଦ୍ଧରେ ନୀଚ ଓ ହୀନ ପ୍ରସ୍ତାବରେ ମତାଇଥିଲେ । ଭାରତର ସ୍ୱାଧୀନତା-ବ୍ୟାକୁଳ ଜନତା ବ୍ରିଟିଶ ସରକାରର ଭୟ ଓ ଧମକରେ ନ ଡରି, କୁପ୍ରସ୍ତାବରେ ପ୍ରଭାବିତ ନ ହୋଇ ଭାରତର ସେନାପତିଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରି ରହିଲେ । ସର୍ଦ୍ଦାର ପଟେଲ, ଓ ଡାକ୍ତର ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ଭାରତର ଶ୍ରେଷ୍ଠତମ ନେତୃବୃନ୍ଦ ଏହି ଆନ୍ଦୋଳନ ପାଇଁ ପ୍ରସ୍ତୁତ ହୋଇ ରହିବାକୁ ପ୍ରକାଶ୍ୟ ଜନସଭାରେ ନିବେଦନ

ଥିଲେ । 'ଭାରତ ଛାଡ଼' ଓ ଗଣଆନ୍ଦୋଳନ ପ୍ରସ୍ତାବର ଶେଷ ବିଚାର ପାଇଁ ଅଗଷ୍ଟ ୭ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଐତିହାସିକ ଅଧିବେଶନ ବସିଲା । କଂଗ୍ରେସ ଏହି ପ୍ରସ୍ତାବକୁ କିପରି ଏହି ଅଧିବେଶନରେ ପ୍ରତ୍ୟାଖାନ କରିଦେବେ ସେଥିପାଇଁ ବ୍ରିଟିଶ ସରକାରର ସମସ୍ତ ଉପାୟ ବିଫଳ ହେଲା । ଶେଷରେ ସରକାର ଏଲାହାବାଦ କଂଗ୍ରେସ କାର୍ଯ୍ୟକାରୀ ବୈଠକରେ ଅଲୋଚିତ ହୋଇଥିବା କେତେକ ଟିପା କାଗଜପତ୍ର କଂଗ୍ରେସ କେନ୍ଦ୍ର ଅଫିସରୁ ଜବତ କରି ନେଇ ହଠାତ୍ ପ୍ରକାଶ କରିଦେଲେ । ତହିଁରେ ଗାନ୍ଧିଜୀଙ୍କ ଜାପାନ ସପକ୍ଷବାଦୀ ଓ ଗାନ୍ଧିଜୀ ଏବଂ ଜହରଲାଲଙ୍କ ଭିତରେ ମତଭେଦ ଥିବା କଥା ସାଧାରଣ ଓ ଆମେରିକାରେ ପ୍ରଚାର କରିବା ମତଲବ ଥିଲା । ମାତ୍ର ତାହା ମଧ୍ୟ ବିଫଳ ହେଲା । ବମ୍ବେର ଐତିହାସିକ ଅଧିବେଶନରେ ସରଗରମ ବାୟୁମଣ୍ଡଳ ଭିତରେ ବିଖ୍ୟାତ ଅଗଷ୍ଟ ପ୍ରସ୍ତାବର ଆଲୋଚନା ଚାଲିଲା । ବମ୍ବେ ଅଧିବେଶନର ମଞ୍ଚ ଉପରୁ ସେନାପତି ଗାନ୍ଧୀ ଜାତିକୁ ସମ୍ବୋଧନ କରି ଯେଉଁ ଭାଷଣ ଦେଲେ ତାହା ଭାଷଣ ନୁହେଁ ଜାତିକୁ ଯୁଦ୍ଧ ଡାକରା । ମୁସଲମାନ ଜାତିକୁ ସମ୍ବୋଧନ କରି ଗାନ୍ଧୀଜୀ ଖିଲାଫତ ଯୁଗର ମଧୁର ମିଳନ ଓ ଅଲି ଭ୍ରାତୃଦ୍ୱୟଙ୍କ ସଙ୍ଗେ ତାଙ୍କର ଆତ୍ମୀୟତାର ସ୍ମୃତି ସ୍ମରଣ କରିଥିଲେ । ଜାତିର ଏ ସଙ୍କଟ ମୁହୂର୍ତ୍ତରେ ମୁସଲମାନ ଭାଇମାନଙ୍କୁ ସମସ୍ତ ପ୍ରକାର ବିଭେଦ ଭୁଲି ଜାତୀୟ ମହାସମରରେ ସମଯୋଦ୍ଧା ହୋଇ ଅବତୀର୍ଣ୍ଣ ହେବାକୁ ସହୃଦୟ ନିବେଦନ କରିଥିଲେ । ସେ ଦୃଢ ଭାବରେ ଘୋଷଣା କଲେ ହିନ୍ଦୁ ମୁସଲମାନଙ୍କ ଭିତରେ ସମ୍ପୂର୍ଣ୍ଣ ଏକତା ଆସିବା ପର୍ଯ୍ୟନ୍ତ ଜାତୀୟ ସଂଗ୍ରାମକୁ ବନ୍ଦ ରଖାଯାଇ ପାରିବ ନାହିଁ । ବ୍ରିଟିଶ ସାମ୍ରାଜ୍ୟବାଦକୁ ଲୋପ କରି ଭାରତର

ସାମ୍ପ୍ରଦାୟିକ ଐକ୍ୟ ଓ ସଂହତ ପନ୍ଥାକୁ 'ସହଜ ଓ ସରଳ କରି ଦେବ । ବ୍ରିଟିଶ ସାମ୍ରାଜ୍ୟବାଦର ଅନ୍ୟତମ ଶକ୍ତିଶାଳୀ ସହାୟକ ରାଜନ୍ୟମଣ୍ଡଳୀଙ୍କୁ ତାଙ୍କର ସ୍ୱଭାବସୁଲଭ ଅମାୟିକତା ଜ୍ଞାପନ କରି ନିବେଦନ କଲେ । କୋଟି କୋଟି ଦରିଦ୍ର ସହବାସୀର ମାରଫତଦାର ବୋଲି ସେମାନେ ନିଜକୁ ମନେ କରି ଏ ଜାତୀୟ ସଙ୍କଟ ବେଳରେ ନିଜର ଦାୟିତ୍ୱ ତୁଲନ୍ତୁ । ବ୍ରିଟିଶ ସରକାରଙ୍କ ଆଜ୍ଞାବହ ହୋଇ ଜାତିକୁ ଆଉ ଲଜ୍ଜା ଓ ଅପମାନ ଦିଅନ୍ତୁ ନାହିଁ । ଜାତି ସେମାନଙ୍କଠାରୁ ଯାହା ଆଶାକରେ ତା ସେମାନେ ପୂରଣ କରି ନିଜର ତଥା ଜାତିର ଗୌରବର ଉତ୍ତରାଧିକାରୀ ହୁଅନ୍ତୁ । ଛାତ୍ର ଓ ଶିକ୍ଷକମାନଙ୍କୁ ପୁଣି ଥରେ ସେମାନଙ୍କର ବିରାଟ ଦାୟିତ୍ୱ ଓ କର୍ତ୍ତବ୍ୟ ଚେତେଇ ଦେଇଥିଲେ । ସେମାନେ ସ୍କୁଲ କଲେଜ ଛାଡ଼ି ଦେଇ ଆସି ନ ପାରନ୍ତି ମାତ୍ର ସମସ୍ୱରରେ ଘୋଷଣା କରନ୍ତୁ—ଆମେ ସ୍ୱାଧୀନ ଭାରତର ଛାତ୍ର ଓ ଶିକ୍ଷକ । ଆମେ କଂଗ୍ରେସର ନୀତି ଓ ଘୋଷଣାକୁ ପୂର୍ଣ୍ଣ ଭାବରେ ସମର୍ଥନ କରୁଛୁ । ଏଇଆ ଘୋଷଣା କରି ସେମାନେ ଚରମ ତ୍ୟାଗ ଓ ଦୁଃଖ ଯନ୍ତ୍ରଣା ପାଇଁ ପ୍ରସ୍ତୁତ ହୋଇ ରହନ୍ତୁ । ଶେଷରେ ସଂବାଦପତ୍ରମାନଙ୍କୁ ନିବେଦନ କଲେ । ସେମାନେ ସମ୍ବାଦପତ୍ରମାନଙ୍କୁ ବନ୍ଦ କରି ଦିଅନ୍ତୁ ପଛକେ ବ୍ରିଟିଶ ସରକାରର ନିତାନ୍ତ ହୀନ ଅପମାନ-ଜନକ ଆଦେଶ ମାନି ସମ୍ବାଦପତ୍ର ନ ଚଳାନ୍ତୁ । ଜାତିର ସଙ୍କଟ ମୁହୂର୍ତ୍ତରେ ସେମାନେ ନିଜର ଐତିହାସିକ ଦାୟିତ୍ୱ ତୁଲାଇ ଜାତିର ଟେକ ରଖନ୍ତୁ । ଶେଷରେ ଭାରତର ଜନତାଙ୍କୁ ସ୍ପଷ୍ଟ ଭାବରେ କହି ଦେଲେ "ଏହି ଗଣସଂଗ୍ରାମ ଶେଷ ସଂଗ୍ରାମ । ଅହିଂସ ଭାବରେ ଏହି ବିରାଟ ସଂଗ୍ରାମ ଚାଲିବ ।" ଅହିଂସାକୁ ସେ ଯେପରି ଧର୍ମ ବୋଲି ଧରିଛନ୍ତି ଜନସାଧାରଣଙ୍କୁ

ସେପରି ଗ୍ରହଣ କରିବାକୁ ନ ଚାହିଁ ସେମାନେ ଅହିଂସାକୁ ନୀତି ହିସାବରେ ଧରନ୍ତୁ ବୋଲି କହୁଥିଲେ । ଭବିଷ୍ୟତ ବାଣୀ ଶୁଣାଇ କହିଲେ ଯଦି ନେତାମାନେ ଉପସ୍ଥିତ ରହି ନ ପାରି ସଂଗ୍ରାମ ପରିଚାଳନା କରିବାକୁ ହୁଏ; ତେବେବେଳେ ଭାରତର ଜନତା କଣ ଅସହାୟ ହୋଇ ବସିବେ ? ତା ହେଲେ ଯୁଗଯୁଗର ସାଧନା ବ୍ୟର୍ଥ ହୋଇଯିବ—ନା, ସେମାନେ ନିଜନିଜକୁ ନେତା ବୋଲି ଭାବି ନେବେ । ନିଜକୁ ସ୍ୱାଧୀନ ଭାରତର ଅଧିବାସୀ ବୋଲି ଘୋଷଣା କରି ନିଜେ ଯାହା ଠିକ ମନେ କରିବେ ସେପରି କରିଯିବେ । ନେତୃତ୍ୱକୁ ଅପେକ୍ଷା ରଖିବେ ନାହିଁ ।

ଶେଷରେ ସ୍ଥିର ହେଲା ଯେ ଗଣସଂଗ୍ରାମର ସେନାପତି ମହାତ୍ମା ଗାନ୍ଧୀ ବଡ଼ଲାଟଙ୍କ ସଙ୍ଗେ ସାକ୍ଷାତ କରି ଏ ବିଷୟରେ ଶେଷ ଜବାବ ପାଇବା ପାଇଁ ଶେଷ ଉଦ୍ୟମ କରିବେ ଏବଂ ତାପରେ ଗଣସଂଗ୍ରାମ ପାଇଁ ତାଙ୍କର କର୍ମପନ୍ଥା ଘୋଷଣା କରିବେ । ଏହା ୧୯୪୨ ଅଗଷ୍ଟ ୮ ତାରିଖର କଥା ।

୧୯୪୨ ଅଗଷ୍ଟ ୯ ତାରିଖ ରବିବାର । ବିଶ୍ୱର ପରାଧୀନ ଜନତାର ବିପ୍ଳବ ଇତିହାସରେ ଏହି ଦିନଟି ଏକ ଚିର ସ୍ମରଣୀୟ ଦିବସ । ସେ ଦିନ ପୃଥିବୀର ସର୍ବାପେକ୍ଷା ବିରାଟ ଓ ସୁସଂଗଠିତ ସାମ୍ରାଜ୍ୟ ବିରୁଦ୍ଧରେ ଗୋଟାଏ ନିରସ୍ତ୍ର ଅହିଂସ ଜନତା ବିପ୍ଳବ ଘୋଷଣା କରିଥିଲେ । ସେ ଦିନ ସେହି ନିରସ୍ତ୍ର ଜନତା ଜାଣିଥିଲେ ଯେ ସେହି ସାମ୍ରାଜ୍ୟବାଦୀ ଶକ୍ତିର ତୋପ ଅଛି, ବନ୍ଧୁକ ଅଛି; ବୋମା ଅଛି, ଉଡ଼ାଜାହାଜ ଅଛି, ବୁଡ଼ା ଜାହାଜ ଅଛି । ଯୁଦ୍ଧ ପାଇଁ ସେ ହଜାର ହଜାର ଆମେରିକା, ଅଷ୍ଟ୍ରେଲିଆ ଓ ଚୀନ ସୈନ୍ୟ ଆଣି

ରଖିଛୁ । ଲାଞ୍ଚ ଦେବାକୁ ତାହା ହାତରେ ଅଜସ୍ର ଟଙ୍କା ଅଛୁ । ଭଡ଼ା ଆଣିବାକୁ ତା ପାଖରେ ବିଶ୍ୱାସଘାତକ ଅଛନ୍ତି । ତଥାପି ସେହି ଜନତା ଅଭୂତପୂର୍ବ ସାହସ ଅବର୍ଣ୍ଣନୀୟ ବୀରତ୍ୱରେ ତାର ସମ୍ମୁଖୀନ ହେଲେ । ସେ ଦିନ ଦୁଇଶ ବର୍ଷ ପରାଧୀନ ଗୋଟିଏ ଜାତିର ଯୁବ ତାର ସୁଖର ସଂସାରକୁ ମୂହୂର୍ତ୍ତକେ ପଦାଘାତ କରି ତ୍ୟାଗର ପଥ, ମୃତ୍ୟୁର ପଥ ବାଛି ନେଲା । ଦୃଢସଙ୍କଳ୍ପ କୃଷକ ତାର ଆଳସ୍ୟ, ଭାଗ୍ୟ, ଭଗବାନକୁ ତ୍ୟାଗ କରି ମୁକ୍ତିସଂଗ୍ରାମର ପୁରୋଭାଗରେ ଛିଡ଼ା ହେଲା । ଅର୍ଦ୍ଧବସ୍ତ୍ରାବୃତ ଶ୍ରମିକ ମାଲିକର ଲାଲ ଆଖିକୁ ଖାତିର ନ କରି କୃଷକକୁ ଅନୁସରଣ କଲା । ସେ ଦିନ ସେହି ଯୁବ, କୃଷକ, ଶ୍ରମିକ ହୁଏତ ଭାବିଲେ ନାହିଁ ଏ ବିପ୍ଳବ କେତେ କାଳ ସ୍ଥାୟୀ ହେବ । ସେମାନଙ୍କର ଆକାଂକ୍ଷା ପୂରଣ ହେବ କି ନାହିଁ ? ସେମାନେ ଭାବିଲେ ନାହିଁ ସେମାନଙ୍କର ପିତା ମାତା ଓ ଆତ୍ମୀୟ ସ୍ୱଜନଙ୍କର ଭବିଷ୍ୟତ କଅଣ ହେବ ? ସେମାନେ ଶୁଣିଥିଲେ ଗୋଟିଏ ଧ୍ୱନି 'କର ବା ମର', ସେମାନେ ଶୁଣିଥିଲେ 'ତୁମେ ସ୍ୱାଧୀନ' 'ତୁମେ ତୁମର ନେତା' 'ଜାତିର ସମ୍ମାନ ରଖ ।' ସେ ଦିନ ଭାରତର ଜନତା କିଏ ବା ଆଖି ଆଗରେ ଦେଖିଲେ, କିଏ ବା ଶୁଣିଲେ ସେମାନଙ୍କର ପ୍ରିୟତମ ନେତା ମହାତ୍ମା, ପଣ୍ଡିତ ଜହର ଲାଲ, ମୌଲାନା ଆଜାଦ, ସର୍ଦ୍ଦାର ପଟେଲ ବ୍ରିଟିଶ ସରକାର ହାତରେ ବନ୍ଦୀ ହୋଇଗଲେ । ଯେଉଁମାନେ ତାଙ୍କ ପାଇଁ ନିଜର ସମସ୍ତ ସୁଖସଂସାର ବିଳାସବ୍ୟସନରେ ଜଳାଞ୍ଜଳି ଦେଇ ଦୁଃଖଯନ୍ତ୍ରଣାର ପଥ, ତ୍ୟାଗର ପଥ ବାଛି ନେଇଥିଲେ ସେହିମାନେ ଗୋଟି ଗୋଟି କରି ତାଙ୍କ ଆଖି ଆଗରେ ଶତ୍ରୁ କାରାଗାରରେ ବନ୍ଦୀ ହୋଇ ରହିଲେ । ବିପ୍ଳବ ପାଇଁ ନେତୃତ୍ୱ ନେବାକୁ ସେମାନଙ୍କୁ ସୁଯୋଗ ମିଳିଲା ନାହିଁ ।

କିନ୍ତୁ କେବଳ ନେତାମାନଙ୍କ ଗିରଫ କଣ ଗଣବିପ୍ଳବର ଏକମାତ୍ର କାରଣ ? ବିପ୍ଳବର ଇତିହାସ ସଙ୍ଗେ ଯେଉଁମାନଙ୍କର ପରିଚୟ ଅଛି ସେମାନେ କହିବେ, ନା ଏହା ସତ୍ୟ ନୁହେଁ । ବିଦ୍ରୋହ ବା ବିପ୍ଳବ ସହଜ କଥା ନୁହେଁ । ଏହା ଦିନକରେ ସଂଗଠିତ ହୋଇ ପାରେ ନା । ବିପ୍ଳବ ପାଇଁ କେତେ ଗୁପ୍ତ ଷଡ଼ଯନ୍ତ୍ର, ପ୍ରକାଶ୍ୟ ଆୟୋଜନ ଲୋଡ଼ା । ଅହିଂସ ବିପ୍ଳବ ପାଇଁ ସେହିପରି ପ୍ରୟୋଜନ ନୈତିକ ସାହସ, ନୈତିକ ବଳ । ଚରମ ତ୍ୟାଗ ଓ ଅସୀମ ଦୁଃଖ ବରଣ କରିବା ଭଳି ଶକ୍ତି ଦରକାର । ଅହିଂସ ସଂଗ୍ରାମର ଏହି ଆୟୋଜନ ବିନା କଣ ଅଗଷ୍ଟ ବିପ୍ଳବ ସମ୍ଭବ ହୋଇଥାନ୍ତା ? ବ୍ରିଟିଶ ସାମ୍ରାଜ୍ୟବାଦ ଅତ୍ୟାଚାର ଭେଦଭାବ ବୃଦ୍ଧି କରି ଭାରତକୁ ଚିରକାଳ ଗୋଲାମ କରି ରଖିବାର ପ୍ରୟାସ, ଭାରତର କୋଟି କୋଟି ବୁଭୁକ୍ଷୁ ଜନତାର ଆଶା ଆକାଂକ୍ଷାର ପ୍ରତୀକ କଂଗ୍ରେସକୁ ଦଳି ଦେବାର ହୀନ ଷଡ଼ଯନ୍ତ୍ର ବିରୁଦ୍ଧରେ ଭାରତର ଜନତାର ପୁଞ୍ଜୀଭୂତ କ୍ରୋଧ ସେ ଦିନ ପ୍ରକାଶ ପାଇଥିଲା । ପ୍ରିୟତମ ନେତାମାନଙ୍କର ଗିରଫ ହେଲା ତାର ଉତ୍କ୍ଷିପ୍ତ କାରଣ ମାତ୍ର ।

## ଅଗଷ୍ଟ ବିପ୍ଳବ

ବ୍ରିଟିଶ ସାମ୍ରାଜ୍ୟବାଦ କହେ 'ଏହା ଅଗଷ୍ଟ ଗଣ୍ଡଗୋଳ', ଭାରତର କମ୍ୟୁନିଷ୍ଟ ଦଳ କହନ୍ତି ଏହା ଏକ 'ପଞ୍ଚମ ବାହିନୀଙ୍କ କାଣ୍ଡ' । ମାତ୍ର ଭାରତର ଭବିଷ୍ୟତ ଐତିହାସିକମାନେ କହିବେ ଫରାସୀ ବିପ୍ଳବ, ରୁଷ ବିପ୍ଳବ ଭଳି ଏହା ଏକ ଗୌରବମୟ ବିପ୍ଳବ । ରୁଷର ନଭେମ୍ବର ବିପ୍ଳବ ଜୟଯୁକ୍ତ ହୋଇ ନ ଥିଲା । ଅଗଷ୍ଟ ବିପ୍ଳବ ମଧ୍ୟ ଜୟଯୁକ୍ତ ହୋଇ ନାହିଁ । ନଭେମ୍ବର ବିପ୍ଳବକୁ ବିଶ୍ୱର ଐତିହାସିକ ଯେଉଁଳି ସ୍ଥାନ ଦେଇଥିଲେ,

ରୁଷର ଚରମ ବିପ୍ଳବପାଇଁ ଏହା ପଥ ପରିଷ୍କାର କରି ଦେଇଥିଲା ବୋଲି ଯେପରି ଅଭିହିତ କରିଥିଲେ, ଅଗଷ୍ଟ ବିପ୍ଳବକୁ ଐତିହାସିକମାନେ ଠିକ୍ ସେହି ସ୍ଥାନ ଦେବେ । ଅଗଷ୍ଟ ବିପ୍ଳବ ଚରମ ମୁକ୍ତି ସଂଗ୍ରାମ ହୋଇ ପାରିଲା ନାହିଁ ମାତ୍ର ସେହି ସଂଗ୍ରାମ ପାଇଁ ପଥ ଖୋଲି ଦେଲା । ଏହି ବିପ୍ଳବ ଯେଉଁ ଅଭିଜ୍ଞତା, ଯେଉଁ ସାହସ, ଯେଉଁ ସଂଗଠନ ଦେଇଗଲା ତାହା ଚରମ ବିପ୍ଳବ ପାଇଁ ଅମୂଲ୍ୟ ସମ୍ପଦ ହୋଇ ରହିଲା । ରୁଷର ଶେଷ ମୁକ୍ତି ସଂଗ୍ରାମ ନଭେମ୍ବର ବିପ୍ଳବର ଶେଷ ପର୍ଯ୍ୟାୟର କେହି ନେତା ନ ଥିଲେ । ରୁଷର କୃଷକ, ରୁଷର ଶ୍ରମିକ ନିଜ ଭିତରୁ ଚେତା ବାନ୍ଧି ବିପ୍ଳବ ଚଳାଇଥିଲେ । ସେମାନେ ଜାଣିଥିଲେ ପ୍ରତିକ୍ରିୟାଶୀଳ ରୁଷ-ଶାସକବର୍ଗ ସେମାନଙ୍କର ପ୍ରିୟତମ ନେତା ଲେନିନ, ଷ୍ଟାଲିନ ଓ ଟ୍ରଟ୍‌ସ୍କିଙ୍କୁ ତାଙ୍କ ପାଖରୁ ନେଇଯିବେ । ଚରମ ବିପ୍ଳବବେଳେ ସେମାନେ ତାଙ୍କ ପ୍ରତ୍ୟକ୍ଷ ନେତୃତ୍ୱରୁ ବଞ୍ଚିତ ହୋଇ ପାରନ୍ତି । ସେଥିପାଇଁ ପ୍ରତ୍ୟେକ ଶ୍ରମିକ, ପ୍ରତ୍ୟେକ କୃଷକ ନିଜ ଶକ୍ତି ଉପରେ ନିଜ ସାହସ ଉପରେ ନିର୍ଭର କରିଥିଲେ । ଅଗଷ୍ଟ ବିପ୍ଳବରେ ତାହାହିଁ ଘଟିଲା । ଭାରତରେ ଜନସାଧାରଣ ଭାବିଥିଲେ ବ୍ରିଟିଶ ସାମ୍ରାଜ୍ୟବାଦ ସେନାପତି ଗାନ୍ଧୀଙ୍କୁ ଗଣବିପ୍ଳବ ପାଇଁ ନେତୃତ୍ୱ ଦେବାକୁ ଛାଡ଼ି ଦେବ ନାହିଁ । ବିଶ୍ୱଯୁଦ୍ଧ ଯେଉଁ ଅବସ୍ଥାରେ ପହଞ୍ଚିଥିଲା ପୂର୍ବ ପ୍ରାଚ୍ୟ ତଥା ଆଫ୍ରିକା ଯୁଦ୍ଧରେ ବ୍ରିଟିଶର ସାମରିକ ଶକ୍ତିର ଯେଉଁଭଳି ବିପର୍ଯ୍ୟୟ ଘଟିଥିଲା ଓ ଭାରତରେ ବ୍ରିଟିଶ-ବିରୋଧୀ ମନୋଭାବ ଅଗ୍ନି ଯେଉଁଭଳି ଚରମ ସୀମାକୁ ଛୁଇଁଥିଲା ସେ ସବୁ ଦେଖି କିଏ ଅବା ଭାବିବ ଭାରତରେ ଗୋଟିଏ ଗଣବିପ୍ଳବ ଚଳାଇବାକୁ ଭାରତର ଜନତାର ସେନାପତି ମହାତ୍ମା ଗାନ୍ଧୀଙ୍କୁ ବ୍ରିଟିଶ ସରକାର ମୁକ୍ତ ଭାବରେ ଛାଡ଼ି ଦେବ । ଗାନ୍ଧୀଜୀ ଜାଣେ

ମଧ୍ୟ ଜାଣିଥିଲେ ବ୍ରିଟିଶ ସରକାର ତାଙ୍କୁ ମୁକ୍ତ ଭାବରେ ଛାଡ଼ିଦେବ ନାହିଁ ବା ଅନ୍ୟ କଂଗ୍ରେସ ନେତାମାନଙ୍କୁ ଏଥିପାଇଁ ଛାଡ଼ି ଦେବ ନାହିଁ । ସେଥିପାଇଁ ସେ ପୂର୍ବରୁ ସତର୍କ କରି ଦେଇଥିଲେ ଯଦି ସେମାନଙ୍କ ପ୍ରିୟତମ ନେତାମାନଙ୍କର ନେତୃତ୍ୱ ପାଇବାର ସୁଯୋଗ ନ ଘଟେ ତାହେଲେ ସେମାନେ ନିଜେ ନିଜକୁ ନେତା ବୋଲି ମନେ କରି କାମ କରିଯିବେ । ସେଥିପାଇଁ ଭାରତର ଜନସାଧାରଣ ଗାନ୍ଧୀଜୀଙ୍କ ନେତୃତ୍ୱରେ ମୁକ୍ତି ସଂଗ୍ରାମ ଚଳେଇବେ ବୋଲି ଆଗ୍ରହରେ ଅପେକ୍ଷା କରିଥିଲେ ମଧ୍ୟ ତାଙ୍କ ନେତୃତ୍ୱ ନ ପାଇ ହତାଶ ହେଲେ ନାହିଁ । ଭାରତର କୃଷକ, ଶ୍ରମିକ, ଛାତ୍ର "ଭାରତଛାଡ଼" କାର୍ଯ୍ୟକାରୀ କରିବାକୁ ନିଜ ଭିତରୁ ନେତା ବାଛି ନେଇ ଅଗ୍ରସର ହୋଇଥିଲେ । ଗାନ୍ଧୀଜୀ, ପଣ୍ଡିତ ଜହରଲାଲ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ ଗିରଫ ହୋଇ ଯାଇଥିଲେ ମଧ୍ୟ ସେମାନେ ହତାଶ ନ ହୋଇ ବରଂ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କୁ ତାର ଜବାବ ଦେବାପାଇଁ କର୍ମପନ୍ଥା ସ୍ଥିର କରି ନେଲେ ।

ଅନେକ କହନ୍ତି ଅଗଷ୍ଟ ବିପ୍ଳବର କର୍ମପନ୍ଥା ନ ଥିଲା । କୌଣସି ପରାଧୀନ ଜାତିର ଚରମ ମୁକ୍ତି ସଂଗ୍ରାମବେଳେ ଗୋଟି ଗୋଟି କରି କର୍ମପନ୍ଥା ସ୍ଥିର କରି ନେବା କେବେହେଲେ ସମ୍ଭବପର ନୁହେଁ । ନଭେମ୍ବର ବିପ୍ଳବବେଳେ ତା ସମ୍ଭବ ହୋଇପାରି ନ ଥିଲା; ଫରାସୀ ବିପ୍ଳବବେଳେ ତାହା ସମ୍ଭବ ହୋଇପାରି ନ ଥିଲା । ଅଗଷ୍ଟ ବିପ୍ଳବବେଳେ ତାହା ସମ୍ଭବ ହେଲା ନାହିଁ । ବାଷ୍ଟାଇଲ ବନ୍ଦୀ ନିବାସକୁ ଅଧିକାର କରିବାର କର୍ମପନ୍ଥା ଫରାସୀ ବିପ୍ଳବର କଳ୍ପନା ବେଳେ କେହି କେବେ ଭାବି ନ ଥିଲେ ବିପ୍ଳବର ଗତି ଭିତରେ ତାର ଆବଶ୍ୟକତା ଉପଲବ୍ଧି ହେଲ

ଏବଂ ବିପ୍ଳବୀ ଫରାସୀଙ୍କ ନେତା ତାଙ୍କୁ କାର୍ଯ୍ୟରେ ପରିଣତ କଲେ । ରୁଷର ନଭେମ୍ବର ବିପ୍ଳବ ବେଳେ ଯାହା ଯାହା ସବୁ ଘଟିଲା ତାଙ୍କୁ ବିପ୍ଳବର କର୍ମପନ୍ଥା ଭାବରେ ନେତାମାନେ ଗୋଟି ଗୋଟି କରି ସ୍ଥିର କରି ଦେଇ ନ ଥିଲେ । ଅବଶ୍ୟ କେତେକ ମୌଳିକ କର୍ମ-ପନ୍ଥାରେ ସେମାନେ ପରିଚାଳିତ ହୋଇଥିଲେ । ଅଗଷ୍ଟ ବିପ୍ଳବର କର୍ମପନ୍ଥା କଂଗ୍ରେସର କେନ୍ଦ୍ର ଅଫିସରୁ ଇସ୍ତାହାର ଭାବରେ କେହି ପଠାଇ ନଥିଲେ । ସାମ୍ରାଜ୍ୟବାଦୀମାନେ ସେ ସୁବିଧା ଦେବେ ବୋଲି କେହି ଆଶା କରୁ ନ ଥିଲେ । ତଥାପି ଅଗଷ୍ଟ ବିପ୍ଳବର ମୂଳ ଉଦ୍ଦେଶ୍ୟ "ଭାରତ ଛାଡ଼"କୁ କାର୍ଯ୍ୟକାରୀ କରିବା । ଅଗଷ୍ଟ ପ୍ରସ୍ତାବରେ ସେହି ନିର୍ଦ୍ଦେଶ ଦିଆ ହୋଇଥିଲା । ଗାନ୍ଧିଜୀଙ୍କର ଏହି "ଭାରତ ଛାଡ଼" ବାଣୀ ଏକ ସୁନିଶ୍ଚିତ ନିର୍ଦ୍ଦେଶ । ୧୯୩୦, ୧୯୪୨ ନୁହେଁ । ଗାନ୍ଧିଜୀ ଆଉ ସତ୍ୟାଗ୍ରହ, ବିଦେଶୀବର୍ଜନ ଓ ଆଇନ ଅମାନ୍ୟରେ ସନ୍ତୁଷ୍ଟ ନ ଥିଲେ । ପ୍ରତିଷ୍ଠିତ ସରକାର ଥାଇ ତାର ନୀତି ସଙ୍ଗେ ଅସହଯୋଗ କରି କ୍ଷାନ୍ତ ରହିବାକୁ ସେ ଚାହିଁ ନ ଥିଲେ । ସେ ଚାହିଁଥିଲେ "ଭାରତ ଛାଡ଼" । ଏଥରକ ବ୍ରିଟିଶ ସରକାରକୁ ଭାରତର ଜନସାଧାରଣଙ୍କ ହାତରେ ସମସ୍ତ କ୍ଷମତା ସମର୍ପଣ କରି ଦେବାକୁ ହେବ । ବର୍ତ୍ତମାନର ସଂକଟ ମୁହୂର୍ତ୍ତରେ ବ୍ରିଟିଶ ସରକାରର ଭାରତକୁ ଶାସନ କରିବା ଯୋଗ୍ୟତା ନାହିଁ । ବ୍ରିଟିଶ ସରକାରକୁ ତୁରନ୍ତ ଏକଥା କରିବାକୁ ପଡ଼ିବ । ଆଉ ଏଥିପାଇଁ ଭାରତର ଜନସାଧାରଣ ଅପେକ୍ଷା କରିପାରିବେ ନାହିଁ । ଗଣଆନ୍ଦୋଳନରେ ଆମକୁ ବ୍ରିଟିଶ ସରକାରଠାରୁ ସେହି ଶାସନ କ୍ଷମତା ଛଡ଼ାଇ ଆଣିବାକୁ ପଡ଼ିବ । ପିକେଟିଂ ଓ ଅସହ-ଯୋଗ କର୍ମପନ୍ଥା ଏଥିପାଇଁ ଯଥେଷ୍ଟ ନୁହେଁ । ଭାରତରେ ବ୍ରିଟିଶ ଶାସନ କଳକୁ ଅଚଳ କରି ଏବଂ ସେହି ଶାସନ କଳକୁ ନିଜେ

ଦଖଲ କରିବାକୁ ହେବ । ଭାରତରେ ରେଲବାଇ, ପୋଷ୍ଟଅଫିସ, କଲକାରଖାନା, ପୋଲିସ ଥାନା, କୋର୍ଟକଚେରୀ ଏହିସବୁ ସରକାରୀକଳ ବ୍ରିଟିଶଶାସନର ମୂଳଭିତ୍ତି ସ୍ୱରୂପ କାମ କରୁଛନ୍ତି । ଏହିସବୁ ଶାସନକଳକୁ ଅଚଳ ନ କଲେ "ଭାରତ ଛାଡ଼"କୁ କାର୍ଯ୍ୟକାରୀ କରିବା ଅସମ୍ଭବ । ଗୋପନ ଷଡ଼ଯନ୍ତ୍ରରେ ନୁହେଁ ପ୍ରକାଶ୍ୟରେ ବିଦ୍ରୋହ ଘୋଷଣା କରି ଅହିଂସ ଉପାୟରେ ତାହା କରିବାକୁ ହେବ । ବ୍ରିଟିଶ ସରକାରର ହୃଦୟ ପରିବର୍ତ୍ତନ ପର୍ଯ୍ୟନ୍ତ ଅପେକ୍ଷା କରିବା ଆଉ ସମ୍ଭବ ନୁହେଁ । କାହାର ଅନିଷ୍ଟ ଚିନ୍ତାକରି, କାହାରିକୁ ଆଘାତ କରି ବା ନିହତ କରି ନୁହେଁ; ନିଜେ ଚରମ ଦୁଃଖ ଯନ୍ତ୍ରଣା ବରଣ କରି ଚରମତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ତାହା କରିବାକୁ ହେବ । ଜେଲ ବରଣ କରିବା ଗାନ୍ଧିଜୀଙ୍କ ଦୃଷ୍ଟିରେ ଅତି ସାମାନ୍ୟ କଥା ବୋଲି ପ୍ରତୀୟମାନ ହୋଇଥିଲା । ଜେଲ ବରଣରୁ ବଳି କଠୋର ତ୍ୟାଗ ପାଇଁ ଭାରତର ଜନସାଧାରଣଙ୍କୁ ଆହ୍ୱାନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଗତ ୨୨ ବର୍ଷ ଭିତରେ ଦୁଇଥର ଅହିଂସ ଆନ୍ଦୋଳନ ଚଳାଇ ଏବଂ ନୈତିକ ଶକ୍ତିର ଦୃଷ୍ଟାନ୍ତ ଦେଖାଇ ତାଙ୍କର ବିଶ୍ୱାସ ଥିଲା ଯେ ଭାରତର ଜନତା ନିଜର ନୈତିକ ଶକ୍ତି ଉପରେ ନିର୍ଭର କରି ରଣ ସଂଗ୍ରାମରେ ପରୀକ୍ଷା ଦେବେ ଏବଂ ସଫଳ ହେବେ । ହିଂସା ଯୁଦ୍ଧରେ ସୈନିକମାନେ ପ୍ରତି ପଦକ୍ଷେପରେ ସେନାପତିଙ୍କ ଆଦେଶକୁ ଯେପରି ଅପେକ୍ଷା କରି ରହିଥାନ୍ତି ସେହିପରି ନୈତିକ ଶକ୍ତି ବଳରେ ବଳୀୟାନ ଅହିଂସ ସୈନିକ ସେନାପତି ଅଭାବରେ ମଧ୍ୟ ନିଜ ସ୍ୱୀୟ ଭିତରୁ ନେତା ବାଛି ମୁକ୍ତି ସଂଗ୍ରାମକୁ ଚଳାଇ ନେବେ । ଭାରତର ଜନସାଧାରଣ ତାହାହିଁ କଲେ । ଏହି ବିପ୍ଳବରେ ଭାରତର ଜନତା ଯାହା କରିଛି, ଯେଉଁ ଶକ୍ତି

ହାସଲ କରିଛନ୍ତି ତାର ପୂର୍ବାପର ବିବରଣୀ ସଂଗୃହୀତ ହୋଇ ନାହିଁ, ଯେତିକ ହୋଇଛି ତହିଁରୁ ତାର ପରିଚୟ ମିଳିଛି ।

# ସୌଭାଗ୍ୟଶାଳିନୀ ବମ୍ବେ ନଗରୀ

ବମ୍ବେ ନଗରୀ ପ୍ରକୃତ ସୌଭାଗ୍ୟଶାଳିନୀ । ଏହି ନଗରୀର ସୌଭାଗ୍ୟବାନ୍ ନରନାରୀ ଐତିହାସିକ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ସର୍ବପ୍ରଥମେ ଗଣବିପ୍ଳବର ବାଣୀ ଶୁଣିଥିଲେ । ଅଗଷ୍ଟ ତା ୮ ରିଖର ବିଖ୍ୟାତ ଅଧିବେଶନର ମଣ୍ଡପ ଉପରୁ ବିପ୍ଳବୀ ଗାନ୍ଧୀଙ୍କର ସେହି ଅବେଗପୂର୍ଣ୍ଣ ଶେଷ ନିର୍ଦ୍ଦେଶ ପ୍ରଥମେ ସେହିମାନେହିଁ ପାଇଥିଲେ । ସର୍ଦ୍ଦାର ପଟେଲଙ୍କର ଶେଷ ଜ୍ୱାଳାମୟୀ ବକ୍ତୃତା ଶୁଣିବାର ସୌଭାଗ୍ୟ ସେହିମାନଙ୍କରହିଁ ଘଟିଥିଲା । ତେଜେ ବିପ୍ଳବୀ ଯୁବକ ସୈନିକଙ୍କର ପ୍ରେରଣାମୟ ଭାଷଣ ସେହିମାନେ ଶୁଣିଥିଲେ । ମୁଷ୍ଟିମେୟ କମ୍ୟୁନିଷ୍ଟ ସଭ୍ୟଙ୍କର ପଛଘୁଞ୍ଚା ସେମାନେ ସେ ଦିନ ଘୃଣାର ସହିତ ଦେଖିଥିଲେ । ସେମାନଙ୍କର ପ୍ରିୟତମ ନେତା ମହାତ୍ମା ଗାନ୍ଧୀ, ପ୍ରାଣପ୍ରିୟ ସର୍ଦ୍ଦାର ପଟେଲ, ରାଷ୍ଟ୍ରପତି ଅଜାଦ, ପଣ୍ଡିତ ଜହରଲାଲ ତାଙ୍କର ଆଖି ଆଗରେ ଶତ୍ରୁର ଅଜ୍ଞାତ କାରାଗାରକୁ ଗ୍ଲାଲିଗଲେ ତାହା ମଧ୍ୟ ସେମାନେ ଦେଖିଲେ । ଗୋଆଲିଆ ଟ୍ୟାଙ୍କ ପ୍ରାନ୍ତରର ସେହି ବିରାଟ ଦୃଶ୍ୟ, ପ୍ରାଣପ୍ରିୟ ନେତାମାନଙ୍କର ସେହି ବାଣୀ ସେମାନେ ଭୁଲି ପାରିବେ ନାହିଁ । ତେଣୁ ଭାରତରେ ସର୍ବପ୍ରଥମେ ଏହି ବମ୍ବେ ନଗରୀରେ ଯେଉଁ ବିପ୍ଳବର ନିଆଁ ଜଳି ଉଠିଥିଲା ତାହା କିଛି ଆଶ୍ଚର୍ଯ୍ୟ ନୁହେଁ । ଅଗଷ୍ଟ ୯ ତାରିଖ ଦିନ ଯେ ବମ୍ବେ ସହରରେ ହଜାର

ହଜାର ଛାତ୍ର, ଛାତ୍ରୀ ବିରାଟ ଶୋଭାଯାତ୍ରାରେ ବିକ୍ଷୋଭ ପ୍ରଦର୍ଶନ କରି ଇଂରେଜ ସରକାରଙ୍କର ଲାଠି ଗୁଳି ଓ ବାୟୋନେଟ ମୁନରେ ସର୍ବପ୍ରଥମ ଜୀବନ ବଳି ଦେଇ ଅଗଷ୍ଟ ମୁକ୍ତି ସଂଗ୍ରାମର ବାଡ଼ି ପ୍ରସ୍ତୁତ କଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହି ନଗରର ଛାତ୍ରଛାତ୍ରୀମାନେ ସ୍କୁଲ କଲେଜ ଛାଡ଼ି ଭାରତର ଛାତ୍ର ସମାଜକୁ ପ୍ରଥମେ ପ୍ରେରଣା ଦେଇ ତାଙ୍କର ସମ୍ମାନ ରକ୍ଷା କରିଥିଲେ ।

## ସର୍ଦ୍ଦାର ପଟେଲଙ୍କ ଗୁଜରାଟରେ

ଅହମଦାବାଦର ସାହସୀ ଶ୍ରମିକ, ବର୍ଦ୍ଦୋଲିର ବୀର କୃଷକ ଅସହଯୋଗ ଆନ୍ଦୋଳନରେ ଅସୀମ ଦୁଃଖ ଯନ୍ତ୍ରଣା ବରଣ କରି ଓ ଚରମ ତ୍ୟାଗ କରି ଯେପରି ଜାତିର କଳଙ୍କ ପୋଛି ଦେଇଥିଲେ, ଅଗଷ୍ଟ ବିପ୍ଳବରେ ସେହିପରି ସେମାନେ ନିଜ ରକ୍ତ ଦେଇ ଅସହନୀୟ ଦାସତ୍ୱ ବିରୁଦ୍ଧରେ ପୁଞ୍ଜୀଭୂତ କ୍ରୋଧ ଓ ଘୃଣା ପ୍ରକାଶ କରିଥିଲେ । ଲାଠିମାଡ଼ ବା ଗୁଳିମାଡ଼ ସେମାନଙ୍କ ପକ୍ଷରେ କିଛି ନୂଆ କଥା ନୁହେଁ । ପ୍ରାଣପ୍ରିୟ ନେତା-ମାନଙ୍କର ବନ୍ଦୀ ସମ୍ବାଦ ପାଇ ସେମାନେ ଅସ୍ଥିର ହୋଇ ପଡ଼ିଥିଲେ । ଗୁଜରାଟର ସ୍କୁଲ କଲେଜ ଓ ଅହମ୍ମଦାବାଦର କଲକାରଖାନାରେ ହରତାଳ ଘୋଷଣା ହୋଇ ଅଗଷ୍ଟ ବିପ୍ଳବ ଆରମ୍ଭ ହେଲା । ଗୁଜୁରାଟର ଛାତ୍ର ଯେଉଁ ସାହସ, ଯେଉଁ ଉତ୍ସାହରେ ଏହି ମୁକ୍ତି ସଂଗ୍ରାମର ଅଗ୍ରଣୀ ହୋଇଥିଲେ ତାହା ବାସ୍ତବିକ ଅଭୂତପୂର୍ବ । ଶତ ଶତ ଛାତ୍ର ଅଗ୍ରଣୀ ହୋଇ ସ୍କୁଲ କଲେଜ ନିକଟରେ ସତ୍ୟାଗ୍ରହ କରି ମାଚେଠୁଁ ଆରମ୍ଭ କରି ଛ'ମାସ ପର୍ଯ୍ୟନ୍ତ ସ୍କୁଲ କଲେଜ ବନ୍ଦ କରି ଦେଇଥିଲେ ।

ଅହମ୍ମଦାବାଦ, ସୁରଟ ବରୋଦାର ସ୍କୁଲ୍ କଲେଜ ସବୁ ଛମାସରୁ ଅଧିକ କାଳ ବନ୍ଦ ହୋଇ ଯାଇଥିଲା । ସ୍କୁଲ କଲେଜ ସବୁ ବନ୍ଦ କରି ଦେଇ ଛାତ୍ରମାନେ ସ୍ଥିର ହୋଇ ବସି ନ ଥିଲେ । ଅମଲାତନ୍ତ୍ରୀ ସରକାର ପ୍ରତିଦିନ ନୂଆ ନୂଆ ଅର୍ଡିନାନ୍ସ ମାନ ଜାରି କରି ବ୍ୟକ୍ତିଗତ ସ୍ୱାଧୀନତାକୁ ଅପହରଣ କରିବାକୁ ଯେଉଁ ହୀନ ଉଦ୍ୟମ କରିଥିଲା, ସେହି ଗଣତନ୍ତ୍ରବିରୋଧୀ ଆଦେଶକୁ ଅମାନ୍ୟ କରି ସେମାନେ ଏହି ସଂଗ୍ରାମକୁ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ କରିଥିଲେ । ଛାତ୍ରମାନଙ୍କର ଏହି ସାହସିକତା ନିକଟରେ ଅମଲାତନ୍ତ୍ର ହାର ମାନି ଥିଲା । ଅମଲାତନ୍ତ୍ରର ଏହି ସ୍ୱେଚ୍ଛାଚାରୀ ଆଦେଶକୁ ଅମାନ୍ୟ କରି ଗୁଜରାଟର ବହୁ ବୀରଛାତ୍ର ଜୀବନବଳି ଦେଇ ଅମର କୀର୍ତ୍ତି ଅର୍ଜନ କରିଛନ୍ତି । ବୀର ବିନୋଦ କିନାରିୱାଲା ଜାତୀୟ ପତାକାର ସମ୍ମାନ ରକ୍ଷା କରୁ କରୁ ଗୁଳିମାଡ଼ରେ ଜୀବନ ଦେଇଥିଲା । ରସିକଲାଲ, ପୁଷ୍ପବଦନ, ଗୋବର୍ଦ୍ଧନ ସାହା, ହମିତ ଲାଲଭାଇଆ ଅମଲାତନ୍ତ୍ରର ନିର୍ମମ ଅତ୍ୟାଚାରର ସମ୍ମୁଖୀନ ହୋଇ ଜୀବନ ଦେଇ ଗୁଜୁରାଟର ଚିରସ୍ମରଣୀୟ ହୋଇଛନ୍ତି । ଆଡ଼ାସ ଦୁର୍ଘଟଣାର ବିବରଣୀ ଉଲ୍ଲେଖ ନ କଲେ ଗୁଜରାଟର ଛାତ୍ରମାନଙ୍କର ବୀରତ୍ୱ କାହାଣୀ ଅପୂର୍ଣ୍ଣ ରହିଯିବ । ଅଗଷ୍ଟ ୧୮ ତାରିଖ ଦିନ ୩୪ ଜଣ ଗୁଜରାଟୀ ଛାତ୍ର ବରୋଦାରୁ ଆନନ୍ଦ ଅଡ଼କୁ ଟ୍ରେନରେ ଯାଉଥିଲେ । ଟ୍ରେନ ଡବାରେ ଅଗଷ୍ଟ ବିପ୍ଳବର ଛପାବାଣୀ ମାରିବା ବା ଚକ୍‌ଖଡ଼ିରେ ଲେଖିଦେବା ପାଇଁ ସେମାନଙ୍କୁ ନିର୍ଦ୍ଦେଶ ଦିଆ ହୋଇଥିଲା । ଛାତ୍ରମାନେ ସେମାନଙ୍କ କର୍ତ୍ତବ୍ୟ ଶେଷ କରି ବରୋଦା ଷ୍ଟେସନରେ ରେଲ୍‌ରେ ଚଢ଼ିବାକୁ ଷ୍ଟେସନ ଅଡ଼କୁ ଯାଉଥିବା ବେଳେ ୫।୭ ଜଣ ସଶସ୍ତ୍ର କନେଷ୍ଟବଲ୍

ନିକଟରେ ହାଜର ହୋଇ ସେମାନଙ୍କୁ ଅଟକାଇ ବସିଯିବାକୁ ଆଦେଶ ଦେଇଥିଲେ । ଲାଠିମାଡ଼ ହେବ କିମ୍ବା ଗିରଫ କରାଯିବ ବୋଲି ଭାବି ସେମାନେ ବସିଗଲେ । ସେମାନେ ବସିଥିବା ଅବସ୍ଥାରେ କନଷ୍ଟେବଲମାନେ ଜାଣିଶୁଣି ସେମାନଙ୍କ ଛାତିକୁ ଲକ୍ଷ୍ୟ କରି ଗୁଳି ମାରିଥିଲେ । ଫଳରେ ସାଙ୍ଗେ ସାଙ୍ଗେ ୪ ଜଣ ଛାତ୍ର ସେଇଠି ମରିଗଲେ ଓ ୧୨ ଜଣ ଆହତ ହୋଇ ହାସପାତାଳକୁ ନିଆ ଯାଇଥିଲେ । ହାସପାତାଳରେ ସେମାନଙ୍କ ଭିତରୁ ଜଣକର ମୃତ୍ୟୁ ହୋଇଥିଲା । ଏହି ପୋଲିସମାନେ ଏପରି ନିଷ୍ଠୁର ଆଚରଣ କରିଥିଲେ ଯେ ଆହତ ଛାତ୍ରମାନେ ପାଣି ମାଗିଲେ ମଧ୍ୟ ପାଣି ଟିକିଏ ଦେଇ ନ ଥିଲେ । ଏହି ବୀର ଛାତ୍ରମାନଙ୍କର ଅମର ବୀରତ୍ୱ କାହାଣୀ ଭାରତର ଯେ କୌଣସି ଛାତ୍ର ହୃଦୟରେ ଉନ୍ମାଦନା ଆଣିଦେବ । ଅହମଦାବାଦ ଶ୍ରମିକମାନଙ୍କର ଅଭୂତପୂର୍ବ ଧର୍ମଘଟ ଅଗଷ୍ଟ ବିପ୍ଳବର ଏକ ଗୌରବମୟ କାହାଣୀ । ସମସ୍ତ କାରଖାନା, ସମସ୍ତ ମିଲ ଓ ବଜାର ମାସ ମାସ ଧରି ବନ୍ଦ ହୋଇ ରହିଥିଲା । ଏହି ଧର୍ମଘଟକୁ ବିଫଳ କରିବାକୁ ସରକାରୀ ଅଫିସର ଓ ମିଲ ଦଲାଲମାନଙ୍କର ସମସ୍ତ ଉଦ୍ୟମ ବିଫଳ ହେଲା । ଏହି ଧର୍ମଘଟ ବେଳେ ଶ୍ରମିକ ଓ ଜନସାଧାରଣ କଂଗ୍ରେସ କର୍ମୀମାନଙ୍କର ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଥରେ ରାସ୍ତା ବନ୍ଦ କରି ଦିଆ ହୋଇଥିଲା । ସେ ଦିନ କେବଳ କଂଗ୍ରେସ କର୍ମୀଙ୍କ ଛଡ଼ା ଅନ୍ୟ କୌଣସି ଲୋକଙ୍କୁ ରାସ୍ତାରେ ଛାଡ଼ି ଦିଆ ହୋଇ ନ ଥିଲା । ଅହମଦାବାଦର ଶ୍ରମିକମାନେ କ୍ରମାନ୍ୱୟରେ ଚାରି ମାସ କାଳ କାମ ବନ୍ଦ କରି ଚାରିକୋଟି ଟଙ୍କା ହରାଇଛନ୍ତି । ବିପ୍ଳବର ଇତିହାସରେ ଏପରି ତ୍ୟାଗ ଓ ଏପରି

ସାହସ ବଢ଼ଲା । ସତ୍ୟ ଓ ଶୋଭାଯାତ୍ରା ଯେତେବେଳେ ବେଆଇନ କରି ଦିଆ ହେଲା ଛାତ୍ର ଓ ଶ୍ରମିକମାନେ ଏକ ନୂତନ ପନ୍ଥା ଅନୁସରଣ କଲେ । ସେମାନେ ଛାତ ଉପରେ ସଭା ଓ ଶୋଭାଯାତ୍ରା କରି ଆମଲାତନ୍ତ୍ରର ଦମନଲୀଳାକୁ ପଣ୍ଡ କରୁଥିଲେ । ଗୁଜରାଟର ସମସ୍ତ ସହରରେ ବ୍ରିଟିଶ ସରକାର ସଶସ୍ତ୍ର ପୋଲିଶ ଶାନ୍ତିପୂର୍ଣ୍ଣ ସଭା ଓ ଶୋଭାଯାତ୍ରାକୁ ଛତ୍ରଭଙ୍ଗ କରି ଦେବାକୁ ଅତ୍ୟନ୍ତ ନିଷ୍ଠୁରତା ଓ ଅତ୍ୟାଚାରର ଆଶ୍ରୟ ନେଉଥିଲେ । ଖେଡ଼ା ଓ ସୁରାଟ ଜିଲ୍ଲାର ପୋଲିଶ ଅଫିସରର ଅତ୍ୟାଚାର ସମସ୍ତଙ୍କୁ ଚପି ଯାଇଥିଲା ।

ଗୁଜରାଟର ଶ୍ରମିକ ଓ ଛାତ୍ରମାନେ ଅଗଷ୍ଟ ବିପ୍ଳବରେ ସର୍ବସ୍ୱ ପଣ କରି ଅଗ୍ରସର ହେଉଥିଲାବେଳେ କୃଷକମାନେ ସ୍ଥିର ହୋଇ ବସି ନ ଥିଲେ । ଦିନେ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ ବର୍ଦ୍ଦୋଲିର କୃଷକମାନେ ଯେଉଁ ବିରାଟ ଗଣସଂଗ୍ରାମ ଗଢ଼ି ଥିଲେ ତାହା ସେମାନେ ଭୁଲି ଯାଇ ନ ପାରନ୍ତି । ଗଣସଂଗ୍ରାମର ଏହି ସୁଯୋଗରେ ସେମାନଙ୍କ ଭିତରେ ପୁଣି ଜାଗରଣ ଦେଖା ଦେଇ-ଥିଲା । ବିପ୍ଳବୀମାନଙ୍କୁ ଗ୍ରାମବାସୀମାନେ ଯେପରି କୌଣସି ସାହାଯ୍ୟ ନ ଦେବେ ସେଥିପାଇଁ ଗ୍ରାମବାସୀଙ୍କ ଉପରେ ସମୂହ ଜୋରିମାନା ଆଦେଶ ହୋଇଥିଲା । ମାତ୍ର ସେମାନେ ଜାଲେ ନ ଦେବେ ଏବଂ ଓଲଟି ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିଦେବେ ସେଥିପାଇଁ ଦଳ ଦଳ କରି ସଶସ୍ତ୍ର ପୋଲିସ ଗାଁକୁ ଗାଁ ଓ ଗାଁର ପ୍ରତ୍ୟେକ ଘରକୁ ଘେରାଉ କରି ଜବରଦସ୍ତି ସମୂହ ଜୋରିମାନା ଆଦାୟ କରୁଥିଲେ । ଖଜଣା ଆଦାୟ କରିବାକୁ ସଶସ୍ତ୍ର ପୋଲିସଙ୍କ ସାହାଯ୍ୟ ନିଆ ହୋଇଥିଲା । ଖଜଣା ଜାଲେ ଜାତୀୟ କର୍ମୀମାନେ ଲୁଟିକରି ନେଇଯିବେ ସେଥିପାଇଁ ସରକାର ଏପରି କରୁଥିଲେ ।

ଗୁଜରାଟର ମ୍ୟୁନିସିପାଲିଟି ଓ ଲୋକାଲବୋର୍ଡ଼ର କର୍ମଚାରୀ-ମାନେ ଗଣସଂଗ୍ରାମ ପ୍ରତି ସେମାନଙ୍କ କର୍ତ୍ତବ୍ୟରେ ଅବହେଳା କରି ନ ଥିଲେ । ସେମାନେ ଅଗଷ୍ଟ ପ୍ରସ୍ତାବକୁ ସମର୍ଥନ କରି ପ୍ରସ୍ତାବମାନ ଗ୍ରହଣ କରିଥିଲେ ଓ ସେମାନଙ୍କ ଅଧୀନରେ ଥିବା ସ୍କୁଲମାନଙ୍କୁ ବହୁକାଳ ବନ୍ଦ କରି ଦେଇଥିଲେ । ଅହମଦାବାଦ ମ୍ୟୁନିସିପାଲିଟିର ଅନେକ ଅଫିସର କାମ କରିବାକୁ ମନା କରି-ଦେଇ ଧର୍ମଘଟ କରିଥିଲେ ଏବଂ ତା ଫଳରେ ଅନେକ ଅଫିସରଙ୍କୁ କାମରୁ ବାହାର କରି ଦିଆ ହୋଇଛି । ବିହାର ଓ ଯୁକ୍ତପ୍ରଦେଶ ଭଳି ନ ହେଲେ ମଧ୍ୟ ଅନେକ ସ୍ଥାନରେ ରେଲ୍ ଲାଇନ କାଟି ଦିଆ ହୋଇଥିଲା । ତିନିଟା ସ୍ଥାନରେ ଟ୍ରେନକୁ ଓଲଟାଇ ପକାଇଥିଲେ । ୧୯୪୪ ମେ ୧୯୪୫ ମେ ମାସ ଭିତରେ ଦୁଇଟା ରେଲ୍‌କୁ ଅଟକାଇ ସମସ୍ତ ଚିଠିପତ୍ର ଲୁଟ କରି ନିଆ ହୋଇ ପୋଡ଼ି ପକା ହୋଇଥିଲା । ଦୁଇଟା ରେଲ୍ ଷ୍ଟେସନକୁ ପୋଡ଼ି ଦିଆ ହୋଇଛି । ଖେଡ଼ା ଜିଲ୍ଲାରେ ୩୦ ଜଣ ପୋଷ୍ଟମ୍ୟାନଙ୍କୁ ବାଟରେ ଅଟକାଇ ସେମାନଙ୍କ ଠାରୁ ଚିଠି ପତ୍ର ଛଡ଼ାଇ ନେଇ ନଷ୍ଟ କରି ଦିଆ ହୋଇଥିଲା । ବରୋଦା ଓ ସୁରାଟ ନିକଟରେ ମାଇଲ୍ ମାଇଲ୍ ଧରି ଟେଲିଗ୍ରାଫ୍ ତାର କାଟି ଦିଆ ହୋଇଥିଲା । ନଡ଼ିଆଦ, ଅହମଦାବାଦ ଓ ବ୍ରୋଚ ଜିଲ୍ଲାର ଅନେକ ସରକାରୀ ଅଫିସ ଉପରକୁ ବୋମା ପକାଇ ଆକ୍ରମଣ କରାଯାଇଥିଲା ଓ ବହୁ ଡ଼ାକ ବଙ୍ଗଳା ପୋଡ଼ି ପକା ହୋଇଥିଲା । ଗୁଜରାଟର ନାନା-ସ୍ଥାନରେ ଯୁବକମାନେ ପୋଲିଶର ଦୃଷ୍ଟି ଅନ୍ତରାଳରେ ରହି ଗଣସଂଗ୍ରାମ ପାଇଁ ନିର୍ଦ୍ଦେଶ ଦେଇ ବୁଲେଟିନ ବାଣ୍ଟି ଥିଲେ । ଜନସାଧାରଣଙ୍କ ସମର୍ଥନ ପାଇଥିବାରୁ ପୋଲିସ ବହୁ ଉଦ୍ୟମ କରି ମଧ୍ୟ ସେମାନଙ୍କ ସନ୍ଧାନ ପାଇ ନ ଥିଲେ । ପୋଲିଶ ଓ

ଜନସାଧାରଣଙ୍କ ଭିତରେ ସଂଘର୍ଷ ସୃଷ୍ଟି ଗଣସଂଗ୍ରାମର ଏକ ଗୌରବମୟ ଅଧ୍ୟାୟ । ଜବଲପୁର ତାଲୁକାର ଏକ ଗ୍ରାମରେ ଶୋଭାଯାତ୍ରା ଆସୁଥିବା ବେଳେ ପୋଲିସ ଶୋଭାଯାତ୍ରାକାରୀଙ୍କ ଉପରେ ହଠାତ୍ ଆକ୍ରମଣ କରିବାରୁ ପୋଲିସ ଓ ଜନସାଧାରଣଙ୍କ ଭିତରେ ସଂଘର୍ଷ ହୋଇ ସାଧାରଣଙ୍କ ଭିତରୁ ୮୯ଜଣ ପୋଲିସର ଗୁଳିରେ ଆଘାତ ପାଇଥିଲେ ଓ ପୋଲିସଙ୍କ ଠାରୁ ୩୪ଟା ରାଇଫଲ୍ ଛଡ଼ାଇ ଆଣିଥିଲେ । ତିନିଟା ପ୍ରଧାନ ପୁଲିଶ ଷ୍ଟେସନ ଉପରେ ଜନସାଧାରଣ ଆକ୍ରମଣ କରି ପୋଲିସଙ୍କ ଠାରୁ ରାଇଫଲ୍ ଓ ଗୁଳି ଛଡ଼ାଇ ଆଣିଥିଲେ । ମାତ୍ର କୌଣସି ବ୍ୟକ୍ତିଗତ ଜିନିଷକୁ କେହି ଛୁଇଁ ନ ଥିଲେ । ଏହାହିଁ ବିଶେଷ ଲକ୍ଷ୍ୟ କରିବାର କଥା । ଏହିପରି ବୀର ସୃଷ୍ଟି ଅଗଷ୍ଟ ବିପ୍ଳବରେ ଏକ ଗୌରବମୟ ଅଧ୍ୟାୟ ରଚନା କରିଥିଲା ।

## ସତାରାରେ ସ୍ୱାଧୀନତା ସଂଗ୍ରାମ

ଇତିହାସ ପ୍ରସିଦ୍ଧ ସତାରା ମରହଟ୍ଟା ସାମ୍ରାଜ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଦେଖା ଦେଇଥିଲା । ୧୬୦୦ ଗ୍ରାମରୁ ଏହି ଜିଲ୍ଲାଟି ଗଣଆନ୍ଦୋଳନ ବେଳେ ଗୌରବମୟ ଇତିହାସ ରଚନା କରି ଆସିଅଛି । ୧୯୩୦ର ଅସହଯୋଗ ଆନ୍ଦୋଳନରେ ଏହି ଜିଲ୍ଲାରୁ ୫୦୦ ସତ୍ୟାଗ୍ରହୀ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶରେ କାରା ବରଣ କରିଥିଲେ । ହଜାର ହଜାର ଲୋକ ଜଙ୍ଗଲ ସତ୍ୟାଗ୍ରହରେ ଯୋଗ ଦେଇ ସତାରାକୁ ରାଜନୈତିକ ଇତିହାସରେ ଅମର କରି ଯାଇଛନ୍ତି । ଏଠାର ବୀର ଅଧିବାସୀ ଅଗଷ୍ଟ ବିପ୍ଳବକୁ ସେମାନଙ୍କର ବିରାଟ ଦାନ ନ ଦେଇ ରହି ପାରନ୍ତେ ନାହିଁ । ସତାରାର ବୀର ଶ୍ରମିକ, କୃଷକ ଓ ଛାତ୍ର ସେମାନଙ୍କ ପ୍ରିୟତମ

ନେତାମାନଙ୍କ ନିର୍ଦ୍ଦେଶ ପାଇବାର ସୁଯୋଗ ପାଇ ନ ଥିଲେ ମଧ୍ୟ ସେମାନେ ହତାଶ ହୋଇ ନ ଥିଲେ । ବ୍ରିଟିଶ ସରକାର ସେମାନଙ୍କ ନେତାଙ୍କ ପ୍ରତି ଯେଉଁପରି ବ୍ୟବହାର କଲେ ତାର ଜବାବ ଦେବାକୁ ସେମାନେ ପ୍ରସ୍ତୁତ ହୋଇଥିଲେ । ଅଗଷ୍ଟ ୯ ତାରିଖ ପରେ ପ୍ରଥମ ସପ୍ତାହରେ ବିପ୍ଳବୀ କର୍ମୀମାନେ ଗ୍ରାମ ଗ୍ରାମ ବୁଲି "ଭାରତ ଛାଡ଼" ବାର୍ତ୍ତା ପ୍ରଚାର କରିଥିଲେ । ପୋଲିସର କଟକଣା ସତ୍ତ୍ୱେ ହଜାର ହଜାର ଲୋକ ସେମାନଙ୍କ ଠାରୁ ବିପ୍ଳବର ବାଣୀ ଶୁଣିବାକୁ ଆଗ୍ରହରେ ଆସି ସମବେତ ହେଉଥିଲେ । କିର୍ଲୋସ୍କାର ଲୁହା କାରଖାନାର ଶ୍ରମିକମାନେ ଅଓଣାଙ୍ଗୁର୍ଏ ଧର୍ମଘଟ ଆରମ୍ଭ କରି ଦେଇଥିଲେ । ଏହି କାରଖାନା ମାସକ ପର୍ଯ୍ୟନ୍ତ ପୁରାପୁରି ବନ୍ଦ ହୋଇ ଯାଇଥିଲା । ସତାରାର ଅଗଷ୍ଟ ବିପ୍ଳବର ଏହା ଏକ ଶୁଭ ସୂଚନା । ନିଖିଳ ଭାରତ କଂଗ୍ରେସ କମିଟିରୁ ଫେରିଥିବା କଂଗ୍ରେସ କର୍ମୀଙ୍କୁ ସତାରାର ଅଧିବାସୀମାନେ ଧର୍ମାଗ୍ରୁର୍ଯ୍ୟ ଦୃଷ୍ଟିରେ ଦେଖୁଥିଲେ ।

ତାଲୁକା କଚେରୀକୁ ଜନସାଧାରଣ ବିରାଟ ଶୋଭାଯାତ୍ରାରେ ଯାଇ ସେମାନଙ୍କ ପୁଞ୍ଜୀଭୂତ ଅସନ୍ତୋଷକୁ ପ୍ରକାଶ କରିଥିଲେ । ଏହି ସବୁ ଶୋଭାଯାତ୍ରା ଶାନ୍ତିପୂର୍ଣ୍ଣ ଓ ଦାୟିତ୍ୱପୂର୍ଣ୍ଣ କଂଗ୍ରେସ କର୍ମୀଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଗ୍ରାମବାସୀମାନେ ଏକ ନିର୍ଦ୍ଦିଷ୍ଟ ଦିନରେ ଏକଜୁଟ ହୋଇ ଜଣେ କଂଗ୍ରେସ କର୍ମୀଙ୍କ ନେତୃତ୍ୱରେ "ଭାରତ ଛାଡ଼" ଧ୍ୱନି ସହ ଗୋଟିଏ ଗୋଟିଏ ତାଲୁକା କଚେରୀ ଭିତରକୁ ଯାତ୍ରା କରି ଯାଉଥିଲେ । କଚେରୀଠାରେ ସେମାନଙ୍କ ନେତା ଅଗଷ୍ଟ ପ୍ରସ୍ତାବଟି ପଢ଼ି ସେମାନଙ୍କୁ ଶୁଣାଇ ଦେଉଥିଲା । କେତେ ଜଣ ବକ୍ତୃତା ଦେଉଥିଲେ ଏବଂ ଶେଷରେ ପତାକା ଉତ୍ତୋଳନ କରାଯାଇ ପୁଣି

ଶୋଭାଯାତ୍ରାରେ ଫେରି ଆସୁଥିଲେ । ଅଗଷ୍ଟ ତା ୨୪ ରିଖ ଠାରୁ ସେପ୍ଟେମ୍ବର ତା ୧୦ ରିଖ ଭିତରେ ଏହିଭଳି ୫ଥର ଯାତ୍ରା ହୋଇଥିଲା । ପ୍ରଥମ ଥର ୨୫୦୦ କୃଷକ ଜଣେ କଂଗ୍ରେସ କର୍ମୀଙ୍କ ନେତୃତ୍ୱରେ କରିଦ କଚେରୀକୁ ଯାତ୍ରା କରି ଯାଇ କଚେରୀ ନିକଟରେ ସମବେତ ହୋଇଥିଲେ । ଜଣେ ପୋଲିସ ଅଫିସର ସେମାନଙ୍କ ନେତାଙ୍କୁ ଆଦେଶ ଦେଲେ; ସେ ଗିରଫ ହେଲେ । ସଶସ୍ତ୍ର ପୋଲିସ ତାଙ୍କୁ ଗିରଫ କରିବାକୁ ଗଲେ । ପୋଲିସର ବାଓନେଟ ମୂନରେ ସେତେବେଳକୁ ଜଣେ ଆହତ ହୋଇ ସାରିଲଣି । ସେମାନଙ୍କ ନେତା ଉତ୍ତେଜିତ ନ ହୋଇ ଲୋକମାନଙ୍କୁ ଆଦେଶ ଦେଲେ "ଆମର ଉଦ୍ଦେଶ୍ୟ ସାଧିତ ହୋଇଗଲା ! ଏବେ ତୁମ୍ଭେମାନେ ଶାନ୍ତିପୂର୍ଣ୍ଣ ଭାବରେ ଚାଲିଯାଅ ।" ପୋଲିସ ପକ୍ଷରୁ ବହୁ ଉତ୍ତେଜନା ସତ୍ତ୍ୱେ କୃଷକମାନେ ନେତାଙ୍କ କଥା ମାନି ଫେରି-ଗଲେ । ଏହାପରି ପାଠକ କଚେରୀଯାତ୍ରା ଗଣସଂଗ୍ରାମର ଏକ ଅତୁଳନୀୟ କାହାଣୀ । ୪୦୦୦ କୃଷକ ଏହି କଚେରୀ ହତାରେ ସମବେତ ହୋଇଥିଲେ । ଏମାନେ ଇଚ୍ଛା କରିଥିଲେ କଚେରୀ ଦଖଲ କରିପାରିଥାନ୍ତେ ମାତ୍ର ଅହିଂସା ବାଣୀ ସେମାନଙ୍କୁ ଅଭିଭୂତ କରିଥିଲା । ସେମାନେ ଶାନ୍ତିପୂର୍ଣ୍ଣ ଭାବରେ ଫେରି ଯାଇଥିଲେ । ବାଦୁଦ ଓ ଇସଲାମପୁରଠାରେ ପୋଲିସ ଓ ଜନସାଧାରଣଙ୍କ ଭିତରେ ପ୍ରଥମ ସଂଘର୍ଷ ଦେଖା ଦେଇଥିଲା । ବାଦୁଦ ଯାତ୍ରା ୩୫ ବର୍ଷର ଜଣେ ଯୁବକଙ୍କର ନେତୃତ୍ୱରେ ପରିଚାଳିତ ହୋଇଥିଲା । ୧୫୦୦ କୃଷକ ଏହି ଶୋଭାଯାତ୍ରାରେ ଥିଲେ । ଯୁବକ ନେତା ରୁଗ୍ଣ ଅବସ୍ଥାରେ ମଧ୍ୟ ଶୋଭାଯାତ୍ରାର ପୁରୋଭାଗରେ ଜାତୀୟ ପତାକା ହସ୍ତରେ ଛିଡ଼ା ହୋଇଥିଲେ । କଚେରୀଠାରୁ କିଛି ଦୂରରେ ପୋଲିସ ଶୋଭାଯାତ୍ରାକୁ ବନ୍ଦ କରି ଦେଇଥିଲେ ।

ଯୁବକ ନେତା ପୋଲିସଙ୍କୁ ଶୋଭାଯାତ୍ରାର ଉଦ୍ଦେଶ୍ୟ ବୁଝାଇ ଦେଇ ତାଙ୍କ ଉତ୍ତରକୁ ଅପେକ୍ଷା କରିଥିଲେ । ପୋଲିସ ଉତ୍ତରରେ ଗୁଳି ଚଳେଇଲେ । ଯୁବକ ନେତା ପଶୁରାମଙ୍କ ଛାତିରେ ତନୋଟି ଗୁଳିଗ୍ଳେଟ ବାଜିଲା । ସେ ସଙ୍ଗେ ସଙ୍ଗେ ଜୀବନ ହରାଇଲେ । ସେହି ସ୍ଥାନରେ ଆଉ ତନୀଜଣ ମରଗଲେ ଓ ହାସପାତାଳରେ ଆଉ ୩ ଜଣ ମଲେ । ପରଦନ ପାଣ୍ଡି ମାଷ୍ଟରଙ୍କ ନେତୃତ୍ୱରେ ଆଉ ଏକ ଶୋଭାଯାତ୍ରା ବାହାରିଲା । ପୋଲିସ ଶୋଭାଯାତ୍ରାକାରୀଙ୍କୁ ଅଟକାଇ ପାଣ୍ଡି ମାଷ୍ଟରଙ୍କୁ ବେଶ୍ ଆଘାତ କର ଗିରଫ କର ନେଇ-ଥିଲେ । ଗିରଫ ହେବା ପୂର୍ବରୁ ସେ ଲୋକମାନଙ୍କୁ ଗୁଲିଯିବା ପାଇଁ ଆଦେଶ ଦେଇଥିଲେ । ଲୋକମାନେ ଉତ୍ତେଜିତ ହୋଇ-ମଧ୍ୟ ନେତାଙ୍କ ଆଦେଶ ମାନି ସେଠାରୁ ଗୁଲି ଯାଉଥିଲେ । ଲୋକମାନେ ଗୁଲିଯାଉଥିବା ବେଳେ ସେମାନଙ୍କୁ ପଛରୁ ଗୁଳି କର ନିର୍ମମ ଭାବରେ ହତ୍ୟା କରାଯାଇଥିଲା । ପୋଲିସର ଏହି ଉତ୍ତେଜନାମୂଳକ ଅବିଗ୍ଭରିତ ଅଦୂରଦର୍ଶୀ କାମରେ ଶାନ୍ତିପୂର୍ଣ୍ଣ ସତାରାର ଜନତା ଉତ୍ତ୍ୟକ୍ତ ହୋଇ ଉଠିଥିଲେ । ଏହି ଘଟଣା ପରେ ପୋଲିଶ ରାଜତ୍ୱ ଗୁଲିଲା । ସତାରାର ୧୫୦୦ରୁ ଅଧିକ ଲୋକଙ୍କୁ ଜେଲ ଦଣ୍ଡ ଦଆ ହୋଇଛୁ । ପୋଲିସର ଦୃଷ୍ଟି ଅନ୍ତରାଳରେ ରହି ଏ ପର୍ଯ୍ୟନ୍ତ ହଜାର ଲୋକ ଲୁଚି ରହିଛନ୍ତି । ସତାରାର ମୁକୁଟହୀନ ସମ୍ରାଟ ନାନପଟିଲଙ୍କୁ ପୋଲିସ ତୀକ୍ଷ୍ଣ ଦୃଷ୍ଟି ଦେଇ ଖୋଜୁଛନ୍ତି । ସେମାନଙ୍କୁ ଧରେଇ ଦେବା ପାଇଁ ସରକାର ହଜାର ହଜାର ଟଙ୍କା ପୁରସ୍କାର ଘୋଷଣା କରିଛନ୍ତି । ବିଗ୍ଭରାଧୀନ ବନ୍ଦୀମାନଙ୍କଠାରୁ କଥା ଆଦାୟ କରିବା ସକାଶେ ସେମାନଙ୍କ ଉପରେ ନିର୍ମମ ଅତ୍ୟାଗ୍ଭର କରାଯାଉଅଛି । ଏହି ଅବସ୍ଥାର ସୁଯୋଗ ନେଇ ଏ ଜିଲାର ଚୋର ଓ ଦାଗୀମାନେ

ସୁବର୍ଣ୍ଣଅଟେଡ଼ି ଖୋଲେଇ ହୋଇଯାଇ ସ୍କେଲ୍ ଉଠାଏତେ ଓ ଲୁଟପାଟ ଜୋରସୋରରେ ଚଳେଇ ଥିଲେ । ଜନସାଧାରଣଙ୍କ ଜୀବନ ବିପଦପୂର୍ଣ୍ଣ ହୋଇ ଉଠିଲା । ମାତ୍ର ପୋଲିସ ଏହାର କୌଣସି ପ୍ରତିକାର କଲେ ନାହିଁ । ସୋଡାଗ୍ରରେ ଏ ପର୍ଯ୍ୟନ୍ତ ପୋଲିସ ରାଜତ୍ୱ ଚାଲିଛି । ୧୫୦୦ ପୋଲିସ ଏ ପର୍ଯ୍ୟନ୍ତ ଗାଁ ଗହଳରେ ପହରା ଦେଉଛନ୍ତି । ଜିଲାର ଚାରି ଜାଗାରେ ସୈନ୍ୟଙ୍କୁ ରଖା ହୋଇଛି । ଏହି ଦୁଇମାସ ତଳେ ଓଠାଙ୍କାରୁ ୭୦ ହଜାର ଟଙ୍କା ସମୂହ ଜୋରିମାନା ଅଦାୟ କରା ହୋଇଛି । ସତ୍ୟାଗ୍ରହିଙ୍କ ଉପରେ ଏ ପର୍ଯ୍ୟନ୍ତ କଟକଣା ରହିଛି ।

## ବିଜୟୀ କର୍ଣ୍ଣାଟକ

ଅଗଷ୍ଟର ଗଣ ବିପ୍ଳବ ବେଳେ କର୍ଣ୍ଣାଟକର ନେତା ଓ କର୍ମୀମାନେ ଅମଲାତନ୍ତ୍ରର ଶାସନକୁ ଯେପରି ଅଭିନବ ଓ ବୀରତ୍ୱ-ପୂର୍ଣ୍ଣ ଉପାୟରେ ବାଧା ଦେଇଥିଲେ ତାହା କର୍ଣ୍ଣାଟକବାସୀ ତଥା ବ୍ରିଟିଶ ସରକାରର ସ୍ମରଣୀୟ ହୋଇ ରହିଥିବ । ଭାରତର ମୁକ୍ତି ସଂଗ୍ରାମରେ କର୍ଣ୍ଣାଟକ ଚିରଦିନ ଅମର କୀର୍ତ୍ତି ଅର୍ଜନ କରି ଆସିଛି । ଚରମ ସଂଗ୍ରାମରେ ବୀର କର୍ଣ୍ଣାଟକବାସୀମାନେ ଅଗ୍ରଣୀ ହୋଇ ବାହାରିବେ ଏ ବିଶ୍ୱାସ ବିପ୍ଳବୀ ଭାରତର ରହିଛି । ୧୮୫୭ର ସିପାହୀ ବିଦ୍ରୋହ ପରେ କର୍ଣ୍ଣାଟକରେ ଏଭଳି ବିରାଟ ଗଣଜାଗରଣ କେବେ ହୋଇ ନ ଥିଲା । ଅମଲାତନ୍ତ୍ରର ଶାସନକଳକୁ ଅଚଳ କରିବାରେ କର୍ଣ୍ଣାଟକର ଯେଉଁ ବୀର ବିପ୍ଳବୀମାନେ ଚରମ ତ୍ୟାଗ କରି ପ୍ରାଣପାତ କରୁଥିଲେ ସେମାନଙ୍କ ସନ୍ଧାନରେ ପୋଲିସ ଦଳ, ସୈନ୍ୟ ଫଉଜ କର୍ଣ୍ଣାଟକର ସହର ଓ ଗ୍ରାମର ନିରୀହ ଅଧିବାସୀଙ୍କୁ ଅସ୍ତବ୍ୟସ୍ତ କରି ଦେଇଥିଲେ ।

ବିରାଟ ପୋଲିସ ଫୌଜ ସୈନ୍ୟଙ୍କ ସହଯୋଗିତାରେ ସେମାନେ ବେଳେ ବେଳେ ଗୋଟିଏ ଗୋଟିଏ ଗ୍ରାମକୁ ଘେରାଉ କରି ପ୍ରତ୍ୟେକ ଛକରେ ସୈନ୍ୟଙ୍କୁ ଜଗୁଆଳ ରଖି ଗ୍ରାମର ନରନାରୀଙ୍କୁ ଘରେ ଘରେ ଯାଇ ବିପ୍ଳବୀ କର୍ମୀଙ୍କ ସମ୍ପର୍କରେ ପ୍ରଶ୍ନମାନ ପଚାରୁଥିଲେ । ଏବଂ ଶେଷରେ ସେମାନଙ୍କର କୌଣସି ସନ୍ଧାନ ନ ପାଇ ଫେରି ଯାଉଥିଲେ । ସେହି ସବୁ "ଅଦୃଶ୍ୟ ନରନାରୀଙ୍କୁ" ଧରେଇ ଦେବା ପାଇଁ ୫୦୦୦ ଟଙ୍କା ପର୍ଯ୍ୟନ୍ତ ପୁରସ୍କାର ଘୋଷଣା କରାଯାଇଥିଲେ ମଧ୍ୟ ଜନସାଧାରଣ ସେମାନଙ୍କ ପ୍ରିୟ ନେତାମାନଙ୍କର ସନ୍ଧାନ ଦେଉ ନ ଥିଲେ । ଶାନ୍ତିପୂର୍ଣ୍ଣ ଉପାୟମାନ ବିଫଳ ହେବା ପରେ ଅମଲାତନ୍ତ୍ର ହିଂସାପୂର୍ଣ୍ଣ ପନ୍ଥା ଅବଲମ୍ବନ କରି ସେମାନଙ୍କର ସନ୍ଧାନରେ ଲାଗିଥିଲେ । ସେହି ସବୁ ଅଦୃଶ୍ୟ କର୍ମୀଙ୍କ ପରିବାରବର୍ଗ ଓ ଆତ୍ମୀୟ ସ୍ୱଜନଙ୍କୁ ଗିରଫ କରାଯାଇ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇ ଥିଲା । ସେହି କର୍ମୀମାନେ ନିଜର ଆତ୍ମୀୟ ସ୍ୱଜନ ଓ ପ୍ରିୟ ପରିବାର ବର୍ଗଙ୍କୁ ଅପମାନ, ଲଜ୍ଜା ଓ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ନିଜେ ନିଜେ ଆସି ଧରା ଦେଉଥିଲେ । ୧୯୪୩ ମେ ମାସ ଶେଷ ବେଳକୁ କଣ୍ଟାଟଙ୍କର ଗ୍ରାମମାନଙ୍କରୁ ପ୍ରାୟ ୪୦୦୦ ଲୋକ ବନ୍ଦୀଶାଳାରେ ଅଟକ ହୋଇଥିଲେ । ଅଗଷ୍ଟ ଗଣ-ସଂଗ୍ରାମର ପ୍ରଥମ ଭାଗରେ କଣ୍ଟାଟଙ୍କରେ ଯେଉଁ ବିରାଟ ସଭା ଓ ଶୋଭାଯାତ୍ରାମାନ ହୋଇଥିଲା ତହିଁରେ ଅମଲାତନ୍ତ୍ର ଭୀତତ୍ରସ୍ତ ହୋଇ ପଡିବା ସ୍ୱାଭାବିକ । ପୋଲିସ ଫଉଜ ଏହି ସବୁ ସଭା ଓ ଶୋଭାଯାତ୍ରାକୁ ଲାଠି ଓ ଗୁଳିମାଡ଼ରେ ଛତ୍ରଭଙ୍ଗ କରିଦେବାକୁ ଉଦ୍ୟମ କରୁଥିଲେ । ଦୂରରୁ ଏକ ଶୋଭାଯାତ୍ରା ଯାଉଥିବା ଦେଖିଲେ ଗୋଟିଏ ବାଳକ ପୋଲିସର ଗୁଳିଚ୍ଛଟରେ

ପ୍ରାଣ ହରାଇ ଥିଲ ଓ ବେଲହରୀଲଟରେ ଗୁଳି ମାଡ଼ରେ ୭ ଜଣ ପ୍ରାଣ ହରାଇଥିଲେ । ଜାପାନର ପୋଲିସ ଷ୍ଟେସନକୁ ଜନତା ପୋଡ଼ି ଦେଇଥିଲେ ଏବଂ ଫଳରେ ଗୁଳିମାଡ଼ରେ ଅନେକ ପ୍ରାଣ ହରାଇଥିଲେ । ସନ୍ଧାତଠାରେ ବିରାଟ ଜନତା ସବ୍‌ଜେଲକୁ ଘେରାଉ କରି ଜଣେ ବନ୍ଦୀଙ୍କୁ ଛିଡ଼ାଇ କରି ଆଣିଥିଲେ । ଛାତ୍ର-ମାନେ ସ୍କୁଲ୍ କଲେଜ ତ୍ୟାଗ କରି ଗ୍ରାମେ ଗ୍ରାମେ ଓ ସହରରେ ବୁଲି ବିପ୍ଳବର ବାର୍ତ୍ତା ପ୍ରଚାର କରିଥିଲେ । ଜନସାଧାରଣ ଅସ୍ଥିର ହୋଇ ଟେଲିଗ୍ରାଫ ଲାଇନ କାଟି ପକାଇ ଥିଲେ । ପୋଲ ଭାଙ୍ଗି ପକାଇଥିଲେ ଓ ରେଲ ଲାଇନ ଉଠାଇ ଦେଇଥିଲେ । କର୍ଣ୍ଣାଟକର ସମସ୍ତ ଜିଲ୍ଲାରେ ପ୍ରାୟଅଡ଼େ ଏଭଳି ହୋଇଥିଲା ।

ସେପ୍ଟେମ୍ବର ତା ୧୫ ରିଖରେ ଯେତେବେଳେ ସଂବାଦ ମିଳିଲା ହୁବ୍ଲି ନିକଟରେ ୪ଟା ରେଲଷ୍ଟେସନ ପୋଡ଼ିଯାଇଛନ୍ତି ବା କ୍ଷତଗ୍ରସ୍ତ ହୋଇଛନ୍ତି ସେତେବେଳେ ପ୍ରାୟଅଡ଼େ ଘୁଅଁଲ୍ୟ ଖେଳି ଯାଇଥିଲା । ଏହା ପରେ ପରେ ପ୍ରଦେଶ ତମାମ ବହୁ ବାଣିଜ୍ୟିକ ବିଭାଗ ଘର, ବିଶ୍ରାମ ଗୃହ, ଯେଉଁଠି ସବୁ ସରକାରୀ ଅଫିସରମାନେ ଆଶ୍ରୟ ନେଉଥିଲେ ସେ ସବୁକୁ ପୋଡ଼ି ଦିଆଯାଇ ହୋଇଥିଲା । ମୋଟରେ ୧୭ ଟା ରେଲଷ୍ଟେସନ ଏକ ପ୍ରକାର ଧ୍ୱଂସ ବା ବହୁ ପରିମାଣରେ କ୍ଷତଗ୍ରସ୍ତ ହୋଇଥିଲା । କୌଣସି ଟେଲିଗ୍ରାଫ୍ ଲାଇନ ଭଲ ଅବସ୍ଥାରେ ନ ଥିଲା । ଗାଁ ଅଫିସରଙ୍କ କାଗଜପତ୍ର ପୋଡ଼ି ଦିଆ ହୋଇଥିଲା ଓ ଯେଉଁମାନଙ୍କ ଠାରେ ଅସ୍ତ୍ରଶସ୍ତ୍ର ଥିଲା ତାକୁ ସବୁ ସେମାନଙ୍କଠାରୁ ଛଡ଼ା ନିଆ ହୋଇଥିଲା । ଅନେକ ସ୍ଥାନରେ କେତେକ ସରକାରୀ ଧାନଗୋଲା ଲୁଟ କରି ନେଇ ଯାଇଥିଲେ ଓ କେତେଟା ଜାଗାରେ ସରକାରୀ ରାଜସ୍ୱ ଲୁଟ କରି ନେଇଥିଲେ । ବେଲଗାଁ ଜିଲ୍ଲା ତମାମ ଓ

ଧରୱାର ବିଜାପୁର ଜିଲାର ଏକ ଅଂଶରେ ଏହି ଭଳି କାର୍ଯ୍ୟ ବହୁ ପରିମାଣରେ ଘଟିଥିଲା । ଏହି ସବୁ ବିଶୃଙ୍ଖଳା ଭିତରେ ଗୋଟାଏ ଶୃଙ୍ଖଳା ରହିଥିଲା । ଦିନେ ଯଦି ଅନେକ ଗୁଡ଼ାଏ ଡାକ ବଙ୍ଗଳା ସବୁଆଡ଼େ ହୁ ହୁ ହୋଇ ଜଳୁଥିଲା ଆଉ ଦିନେ ୨୦୦ ମାଇଲ ଧରି ଟେଲିଗ୍ରାଫ୍ ଓ ଟେଲିଫୋନ ଲାଇନର ସନ୍ଧା ମିଳୁ ନ ଥିଲା । ଦିନେ ହୁଏତ ୫୦୦୦ ମାଇଲ ସ୍ଥାନ ଭିତରେ ସବୁଆଡ଼େ ଗୋଟାଏ ଜାତୀୟତାର ପ୍ରତୀକ ମାତ୍ର ଦିଅ ହୋଇଥିଲା । ବିରାଟ ଅଦୃଶ୍ୟ ସୈନ୍ୟବାହିନୀଙ୍କ ଅକ୍ଲାନ୍ତ ଉଦ୍ୟମରେ ଏଭଳି ହୋଇ ପାରିଥିଲା । ଅକଥନୀୟ ଅତ୍ୟାଚାର, ଦମନଲୀଳା ବା ପ୍ରଲୋଭନ କୌଣସି ମତେ ଜନସାଧାରଣଙ୍କ ଉତ୍ସାହକୁ ଦବେଇ ଦେଇପାରି ନ ଥିଲା । ଏପରି ଅବସ୍ଥା ହେଲା ଯେ ସରକାର ସହରମାନଙ୍କରୁ ଚାଲିଯାଇ ଛାଉଣିମାନଙ୍କରେ ରହିବାକୁ ବାଧ୍ୟ ହୋଇଥିଲେ । ଗ୍ରାମରେ ଥିବା ଛୋଟ ଛୋଟ ଥାନାକୁ ଉଠାଇ ଦିଆ ହୋଇଥିଲା । ରେଲ ଲାଇନ ଓ ଷ୍ଟେସନକୁ ପୋଲିସ ଜଗୁଆଳି କରି ରଖିଥିଲେ । ପୋଲିସର ଦୃଷ୍ଟି ଅନ୍ତରାଳରେ ରହି ଯେଉଁମାନେ କାମ କରୁଥିଲେ ସେମାନେ କୌଣସି ପୋଲିସର ବ୍ୟକ୍ତିଗତ ଭାବରେ କିଛି ଅନିଷ୍ଟ କରିଥିବାର ଗୋଟିଏ ହେଲେ ପ୍ରମାଣ ନାହିଁ । ସେହି କର୍ମୀମାନେ ଜନସାଧାରଣଙ୍କ ପୂର୍ଣ୍ଣ ସମର୍ଥନ ଓ ସହଯୋଗ ପାଉଥିଲେ ତେଣୁ ସେମାନେ ସବୁଆଡ଼େ ପ୍ରକାଶ୍ୟ ଭାବରେ ବୁଲୁଥିଲେ ମଧ୍ୟ ପୋଲିସ ସେମାନଙ୍କୁ ଗିରଫ କରି ପାରୁ ନ ଥିଲେ । ଅନେକ ପୋଲିସ ଅଫିସର ଅମଲାତନ୍ତ୍ରକୁ ଅମାନ୍ୟ କରି ଦଣ୍ଡ ଭୋଗିଥିଲେ । ଦୁଇଜଣ ବାଳିକା ଜିଲାଜଜଙ୍କ ଏଜଲାସ ଉପରକୁ ଉଠିଯାଇ ଜଜଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କରିଥିଲେ । ଅନେକ ତାଲୁକ ଅଫିସରେ ପଶି ଲୋକେ କାଗଜ-

ଫାଡ଼ ଚିର ଦେଇଥିଲେ । ଅନେକ ଶୋଭାଯାତ୍ରାରେ ସରଳ ଗ୍ରାମବାସୀମାନେ ପୋଲିସ ଆଦେଶକୁ ନ ମାନି ଗୁଳିରେ ପ୍ରାଣ ହରାଇଥିଲେ । ଆନ୍ଦୋଳନ ବନ୍ଦ କରିବାକୁ ନେତାମାନଙ୍କୁ ପରାମର୍ଶ ଦିଆହେବା ପର୍ଯ୍ୟନ୍ତ ଏହିଭଳି କାମ ଚାଲିଥିଲା ।

ଏହି ସବୁ "ଶାନ୍ତିଭଙ୍ଗ" କୁ ଦବେଇବାପାଇଁ ଇଂରେଜ ସରକାର ପ୍ରାଣପଣ ଉଦ୍ୟମ କରିଥିଲେ । ୫୦୦୦ ଫଉଜ ଓ ୩୦୦ ଅଫିସରଙ୍କର ୭ମାସ ଅକ୍ଲାନ୍ତ ଉଦ୍ୟମରେ ଗଣ-ସଂଗ୍ରାମରେ ସଂପୃକ୍ତ ଥିବା ବହୁ କର୍ମୀଙ୍କୁ ଗିରଫ କରି ନିଆ ହୋଇଥିଲା ଓ ସରକାର ଏହି ଅଦୃଶ୍ୟ ସୈନ୍ୟବାହିନୀଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇଥିଲେ । ଏହିସବୁ ବିଚାରାଧୀନ ବନ୍ଦୀଙ୍କ-ଠାରୁ କଥା ଆଦାୟ କରିବା ସକାଶେ ସେମାନଙ୍କ ଉପରେ ନିର୍ମମ ଭାବରେ ଅତ୍ୟାଚାର କରାଯାଇଛି । ପୋଲିସଙ୍କ ଭିତରୁ କେହି କେହି ନିଜେ ସ୍ୱୀକାର କରିଛନ୍ତି ଯେ ସେମାନେ ଗ୍ରାମବାସୀଙ୍କୁ ରାତିରେ ନିଦରୁ ଉଠାଇ ପିଟୁଥିଲେ । ଯଦି ସେମାନଙ୍କ ଭିତରୁ କେହି ପଳାଇ ଯାଉଥିଲେ ତା ହେଲେ ପୋଲିସ ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ପିଟୁଥିଲେ । ଅନେକ ବିଚାରାଧୀନ ବନ୍ଦୀଙ୍କୁ ଲଙ୍ଗଳା କରି ତାଙ୍କ ଉପରେ ନିର୍ମମ ଭାବରେ ମାଡ଼ ଦେଉଥିଲେ । ସେମାନଙ୍କଠାରୁ ରକ୍ତସ୍ରୋତ ଛୁଟିଲା ପରେ ମଧ୍ୟ ସେମାନଙ୍କୁ ଛାଡ଼ି ଦିଆଯାଉ ନ ଥିଲା । ଅନେକ କର୍ମୀଙ୍କୁ ବହୁ ବର୍ଷ କାରାଦଣ୍ଡ ଆଦେଶ ହୋଇଛି । କେତେକ ୧୫ ବର୍ଷ ପର୍ଯ୍ୟନ୍ତ ଜେଲଦଣ୍ଡ ପାଇଛନ୍ତି । ଅନେକ କର୍ମୀ ଜୀବନ ହରାଇଛନ୍ତି । ଠିମା ଗଉଡ଼ା ଗ୍ରାମକୁ ଗ୍ରାମ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରି ଜୀବନ୍ତ ଅବସ୍ଥାରେ ଫେରିବେ ନାହିଁ ବୋଲି ପଣ କରିଥିଲେ ଏବଂ କାମ କରିବା ଅବସ୍ଥାରେ ସେ ଜୀବନ ଦେଇଥିଲେ । ଗାନ୍ଧିଜୀଙ୍କ ଦଣ୍ଡିଯାତ୍ରାର

ଜଣେ ଯୁବକ କର୍ମୀ ମହାଦେବ ମେଲର ମାତୃଭୂମିର ସେବାରେ ନିଜକୁ ଉତ୍ସର୍ଗ କରି ଦେଇ ନିରସ୍ତ୍ର ଜନତା ଉପରେ ଆକ୍ରମଣ ହେଉଥିବାବେଳେ ଗୁଳି ମାଡ଼ରେ ଜୀବନ ହରାଇଥିଲେ । ୧୯୪୩ରେ ବମ୍ବେ ସରକାର "ଗଣ୍ଡଗୋଳ ଅବସ୍ଥା ସମ୍ପର୍କୀୟ ଭତ୍ତା" ନାମରେ ପାଞ୍ଚମାସର ଦରମା ବେଲଗାଁ ଓ ଧାରୱାରରେ ୧୯୪୨ ଅଗଷ୍ଟ ବିପ୍ଳବବେଳେ ଯେଉଁମାନେ ପ୍ରତ୍ୟକ୍ଷ ଭାବରେ କାମ କରିଥିଲେ ସେମାନଙ୍କୁ ପୁରସ୍କାର ସ୍ୱରୂପ ଦେଇଛନ୍ତି । ସେ ସମୟରେ ଯେଉଁ ଅସୁବିଧା ଅବସ୍ଥା ଉପୁଜିଥିଲା ତାକୁ ସମ୍ଭାଳି ନେଇଥିବାରୁ କୃତଜ୍ଞତା ସ୍ୱରୂପ ଏହି ପୁରସ୍କାର ସରକାର ପ୍ରଦାନ କରିଥିଲେ ।

## ଅଗଷ୍ଟ ବିପ୍ଳବରେ ଆସାମର ବିରାଟ ଦାନ

୧୯୪୨ ଅଗଷ୍ଟ ବିପ୍ଳବରେ ଆସାମର ଦାନ ଅତୁଳନୀୟ । ଶାନ୍ତିପ୍ରିୟ ଆସାମବାସୀ ପୋଲିସ ଓ ସୈନ୍ୟ ଫଉଜର ନିର୍ମମ ଅତ୍ୟାଚାର ଓ ଦମନଲୀଳାର ଯେଉଁ ଜବାବ ଦେଇଥିଲେ ଭାରତର ମୁକ୍ତି ସଂଗ୍ରାମର ଇତିହାସରେ ତାହା ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିବ । ବମ୍ବେ ଯୁକ୍ତପ୍ରଦେଶ ବା ବିହାରରେ ନେତାମାନଙ୍କ ଗିରଫ ସଂବାଦ ଶୁଣିବା ମାତ୍ରେ ଯେପରି ବିପ୍ଳବର ନିଆଁ ଜଳି ଉଠିଥିଲା ଆସାମରେ ତାହା ହୋଇ ନ ଥିଲା । ଆସାମବାସୀ ଏହି ସଂବାଦ ଶୁଣି ପ୍ରଥମେ ହତୋତ୍ସାହ ହୋଇ ପଡ଼ିଥିଲେ । ଅଗଷ୍ଟ ତା ୯ରିଖଠାରୁ ପ୍ରଥମ ଅଠରଦିନ ଆସାମରେ କୌଣସି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟି ନ ଥିଲା । ଆସାମର ଗୁରୁଅଡ଼େ ଏମିତିକି ପଲ୍ଲୀ ଅଞ୍ଚଳରେ ଆପଣାଛାଏଁ ହରତାଳ କରି ଜନସାଧାରଣ ପ୍ରତିବାଦ ଜଣାଇଥିଲେ । ସ୍କୁଲ ଓ କଲେଜରେ ଧର୍ମଘଟ ସଭା

ଓ ଶୋଭାଯାତ୍ରା ଆସାମରେ ଦୈନନ୍ଦିନ ଘଟଣା ହୋଇ ପଡ଼ିଥିଲା । ପୋଲିସ ଫଉଜ ଏହି ସବୁ ଶାନ୍ତିପୂର୍ଣ୍ଣ ହରତାଳ ସଭା ଓ ଶୋଭାଯାତ୍ରାକୁ ଛତ୍ରଭଙ୍ଗ କରି ଦେବାକୁ ଚେଷ୍ଟା କରିଥିଲେ । ଗିରଫ, ଘର ଖାନତଲାସ ଓ କଂଗ୍ରେସ ପାର୍ଟି ଜବତ୍ କରି ସରକାର ବାୟୁମଣ୍ଡଳକୁ ଉତ୍ତେଜିତ କରି ଦେଇଥିଲେ । କଂଗ୍ରେସ କମିଟି ଓ ଶାନ୍ତି ସେନା ଅଫିସ ସବୁ ପୋଲିସ ଅନେକ ସ୍ଥାନରେ ଦଖଲ କରି ନେଇଥିଲେ । କେତେକ ସ୍ଥାନରେ ପୋଡ଼ି ପକାଇଥିଲେ ବା ଭାଙ୍ଗି ପକାଇଥିଲେ । ଏହିପରି ଅମଲାତନ୍ତ୍ର ସରକାର ଆସାମର ଶାନ୍ତିପୂର୍ଣ୍ଣ କଂଗ୍ରେସକର୍ମୀ ଓ ଜନ-ସାଧାରଣଙ୍କ ବିରୁଦ୍ଧରେ ବଲାତ୍କାର ଅତ୍ୟାଚାର ଆରମ୍ଭ କରି ଦେଇଥିଲେ । କିନ୍ତୁ ଜନସାଧାରଣ ଏଥିରେ ଭୟଭୀତ ହୋଇ ଯାଇ ନ ଥିଲେ ।

କିଛିଦିନ ଏହିପରି ଶାନ୍ତିପୂର୍ଣ୍ଣ ସଭା ଓ ଶୋଭାଯାତ୍ରା ପରେ ଅଗଷ୍ଟ ବିପ୍ଳବ ଆସାମରେ ବିରାଟ ଆକାର ଧାରଣ କରିଥିଲା । ସ୍ଥିରମାସ କାଳ ଆସାମରେ ସରକାରୀ ଶାସନକଳ ବନ୍ଦ ହୋଇ ଯାଇଥିଲା । ସାଧାରଣ ଓ ସଶସ୍ତ୍ର ପୋଲିଶ ବିଦ୍ରୋହିକେନ୍ଦ୍ରମାନଙ୍କୁ ମାର୍ଚ୍ଚିଂ କରି ଯିବା ଛଡ଼ା ଅନ୍ୟ କୌଣସି କାମ କରୁ ନ ଥିଲେ । ଏହି ଗଣ ସଂଗ୍ରାମରେ ଗିରଫ ହୋଇଥିବା ରାଜନୈତିକ ବନ୍ଦୀମାନଙ୍କ ବିଚାର ଛଡ଼ା କଲ ମାଜିଷ୍ଟ୍ରେଟ ଆଉ ଅନ୍ୟ କୌଣସି କାମ କରୁ ନ ଥିଲେ । ଅଧିକାଂଶ ସ୍ଥାନରେ ଜନସାଧାରଣ ନିଜ ପଞ୍ଚାଏତ ଗଢ଼ି ବିଚାର ଆରମ୍ଭ କରି ଦେଇଥିଲେ ।, ଗ୍ରାମବାସୀମାନେ ପୋଲିସ କାମ କରି ନେଉଥିଲେ । ସେହି ଗ୍ରାମ ପଞ୍ଚାଏତମାନେ ନିଜ ଗ୍ରାମରେ ସବ୍‌ଜେଲମାନ ବସାଇ ନିଜ ଲୋକଙ୍କ ଦ୍ୱାରା ପରିଚାଳିତ କରାଇ ଥିଲେ । ଘର ଓ ହାଟମାନ ନିୟମ ଧରି ରାଜସ୍ୱ ଆଦାୟ

କରିଥିଲେ । ଗ୍ରାମ ଭିତରୁ କୌଣସି ଜିନିଷ ବାହାରକୁ ଛାଡ଼ ଦେଉ ନ ଥିଲେ ଏବଂ ଏହି ସବୁ ନିୟମ ନ ମାନିଲେ ଗ୍ରାମପଞ୍ଚାଏତମାନେ କଠିନ ଦଣ୍ଡ ଦେଉଥିଲେ । ସ୍ୱେଚ୍ଛା ସେବକମାନେ ଗ୍ରାମମାନଙ୍କରୁ ଧାନ, ଗାଈ ଗୋରୁ, ପନିପରିବା ବାହାରକୁ ଛାଡ଼ ଦେଉ ନ ଥିଲେ ଏବଂ କେହି ବାହାରକୁ ନେଇ ଗଲେ ସେମାନେ ଜିଲ୍ଲା-ବୋର୍ଡ ଓ ବାରିକ୍ ମିସ୍ତ୍ରୀ ବିଭାଗ ରାସ୍ତାମାନଙ୍କୁ ଭାଙ୍ଗି ଦେଉ ଥିଲେ । ଫଳରେ ଚଲାଚଲ ବନ୍ଦ ହୋଇ ଯାଉଥିଲା । ସାଧାରଣ ପୁଲିସ ଫଉଜ ଏଥିରେ ହସ୍ତକ୍ଷେପ କରିବାକୁ ସାହସ କରି ନ ଥିଲେ । କେବଳ ସଶସ୍ତ୍ର ପୁଲିସ ନାନା ପ୍ରକାର ଅତ୍ୟାଚାର କରି ଏହି ଗ୍ରାମ ଭିତରେ ପ୍ରବେଶ କରି ତଦନ୍ତ କରି ପାରିଥିଲେ ।

ଗୋଟାଏ ଦୁଇଟା ସ୍ଥାନରେ ଲୋକମାନେ ଟେଲିଗ୍ରାଫ ଓ ଟେଲିଫୋନ ଲାଇନ କାଟି ଦେଇଥିଲେ । ନଭେମ୍ବର ମାସଠାରୁ ରେଲଗାଡ଼ି ଓଲଟାଇ ଦେବା, ରେଲ ଲାଇନ କାଟି ଦେବା, ମାଲ ଗୋଦାମ, ଷ୍ଟେସନ ଘର, ଡାକ ବଙ୍ଗଳା, ଜଙ୍ଗଲ ବିଭାଗ ଅଫିସ, ସାମରିକ ମାଲ ଗୋଦାମ ଓ ସ୍କୁଲ କଲେଜ ପୋଡ଼ି ଜାଳି ଦେବା କାମ ଜୋରସୋରରେ ଚାଲିଥିଲା । ଆସାମର ୭ଟି ଜିଲ୍ଲା ଭିତରୁ ଓନଗାଁ ଜିଲ୍ଲାରେ ସର୍ବାପେକ୍ଷା ଅଧିକ ଜୋରସୋରରେ ଆନ୍ଦୋଳନ ଚାଲିଥିଲା ଓ ତେଜପୁର ସବ୍‌ଡିଭିଜନ ଅହିଂସ ପ୍ରତିରୋଧର ଅପୂର୍ବ ଦୃଷ୍ଟାନ୍ତ ଦେଖାଇ ଦେଇ ପାରିଥିଲା । ଏହା ଛଡ଼ା ପ୍ରତ୍ୟେକ ସ୍ଥାନରୁ ଏହିଭଳି ଶତ ଶତ ଦୃଷ୍ଟାନ୍ତ ମିଳୁଛି ଯେଉଁଥିରେ ଜନସାଧାରଣଙ୍କ ଅଦ୍ଭୁତ ସାହସ ଓ ବୀରତ୍ୱ ଏବଂ ଅମଲାତନ୍ତ୍ରର ନିର୍ମମ ଅତ୍ୟାଚାର ପ୍ରକାଶ ପାଇଛି । ନଓଗାଁରେ ଜନସାଧାରଣଙ୍କ ଉପରେ ପୋଲିସ ଓ ଅମଲାତନ୍ତ୍ର ନିର୍ମମ

ଅତ୍ୟାଚାରର ଜ୍ୱଳନ୍ତ ନମୁନା ଦେଖାଇଥିଲେ । ଗ୍ରାମବାସୀଙ୍କର ଏକମାତ୍ର ଦୋଷ ଗ୍ରାମର କେତେକ ଯୁବକ ବେଟବେଙ୍ଗା ନିକଟରେ ଥିବା ଗୋଟାଏ କାଠ ପୋଲ ଉପରେ ଘାସ ଜାଳିଥିବାର ପୋଲିସ ଦେଖି ପାରିଥିଲେ । ଅଗଷ୍ଟ ତା ୨୮ ରିଖରେ ଦଳେ ପୋଲିସ ବେଟବେଙ୍ଗା ପୋଲ ନିକଟରେ ଲୁଚି କରି ରହି ଦଳେ ଗ୍ରାମବାସୀଙ୍କୁ ପୋଲ ନିକଟକୁ ଫେର ବେଳା ଆସୁଥିବା ବେଳେ ସେମାନଙ୍କ ଅଡ଼କୁ ଗୁଳି ଚଳେଇ ଦୁଇ ଜଣଙ୍କୁ ହତ୍ୟା କରିଥିଲେ । ଏଥିରେ ସନ୍ତୁଷ୍ଟ ନ ହୋଇ ସଶସ୍ତ୍ର ପୁଲିସ ଫଉଜ ସମୂହ କୋରମାନା ଆଦାୟ କରିବା ନାଁରେ ରାତ ଅଧରେ ବେଟବେଙ୍ଗା ଗ୍ରାମକୁ ଘେରି ଯାଇ ଯେ କୌଣସି ଲୋକ ଗାଁରୁ ଖସି ଯିବାକୁ ଚେଷ୍ଟା କଲା ମାତ୍ରେ ତା ଉପରେ ଅତି ଅମାନୁଷିକ ଅତ୍ୟାଚାର କରିଥିଲେ । ସେତିକି ନୁହେଁ, ପରଦିନ ସଶସ୍ତ୍ର ପୋଲିସ ଏହି ଗ୍ରାମର ୪୦୦ ନରନାରୀ ଓ ବାଳକ ବାଳିକାଙ୍କୁ ୯ ମାଇଲ ଦୂରରେ ଥିବା ନଓଗଙ୍ଗ ଥାନାକୁ ପ୍ରଚଣ୍ଡ ଖରାରେ ଚଲେଇ ଚଲେଇ ନେଇ ଥିଲେ । ଜଣେ ଉକ୍ତ ବଂଶୀୟା ମହିଳାକୁ ତାର ତିନି ଦିନର ଗୋଟିଏ ଶିଶୁ ସହିତ ଟାଣି ଟାଣି ନିଆ ହୋଇଥିଲା ଓ ଫଳରେ ପିଲାଟି କିଛି ସମୟ ପରେ ମରି ଯାଇଥିଲା । ଗଠନ-ମୂଳକ କର୍ମ ପନ୍ଥା ଓ ଶାନ୍ତିସେନାର କେନ୍ଦ୍ର ବାଟଦ୍ରପୁଞ୍ଜିଅରେ ଯେତେବେଳେ ସାମରିକ ପୋଲିସ ପ୍ରବେଶ କଲେ ତିଲକ ସିଂହଙ୍କ ନେତୃତ୍ୱରେ ସେତେବେଳେ ଶାନ୍ତିସେନାମାନେ ଗ୍ରାମରେ ଜଗୁଆଳ ହୋଇ ରହିଥାନ୍ତି । କୌଣସି ବିପଦର ଆଶଙ୍କା ଦେଖା ଦେଲାକ୍ଷଣି ଶାନ୍ତିସେନାଙ୍କୁ ଗ୍ରାମବାସୀଙ୍କୁ ସତର୍କ କରାଇ ଦେବା ପାଇଁ ନିର୍ଦ୍ଦେଶ ଦିଆ ହୋଇ ଥାଏ । ସାମରିକ ପୋଲିସ ଗ୍ରାମ ଭିତରେ ପାଦ ଦେଲାକ୍ଷଣି ବୀର ସେନାପତି ସତର୍କ ବାଣୀ

କ୍ଷୁଣାଇ ଦେଲେ । ସାମରିକ ପୋଲିସ ଶାନ୍ତିସେନାର ସେନାପତିଙ୍କ ନିକଟବର୍ତ୍ତୀ ହେଲେ ଏବଂ ତାଙ୍କୁ ରାଇଫଲ ଦେଖାଇ ଅଭଦ୍ରରେ ସେହି ଶିଙ୍ଗା ନ ବଜାଇବାକୁ ଆଦେଶ ଦେଲେ । ମାତ୍ର ସେନାପତି କହିଲେ ଯେ, ସେ ତାଙ୍କ କର୍ତ୍ତବ୍ୟ କରିବେ । ସେ ପୁଣି ଥରେ ତାଙ୍କ ଶିଙ୍ଗା ବଜାଇଲେ । ସାମରିକ ପୋଲିସ ପକ୍ଷରେ ଏହା ଅସହ୍ୟ ହୋଇ ଉଠିଲା । ସେମାନେ ସେନାପତି ତିଲକ ସିଂହଙ୍କୁ ସଙ୍ଗେ ସଙ୍ଗେ ଗୁଳି କରି ଦେଇଥିଲେ । ତିଲକ ସିଂହଙ୍କ ଶିଂଗା ଶବ୍ଦ ଶୁଣି ଗ୍ରାମବାସୀମାନେ ସେଠାରେ ଜମା ହୋଇ ପଡ଼ିଥିଲେ । ଶାନ୍ତିସେନାମାନେ ମଧ୍ୟ ଜମା ହୋଇଥିଲେ । ସମବେତ ଗ୍ରାମବାସୀମାନେ ତିଲକ ସିଂହଙ୍କ ମୃତ୍ୟୁରେ ଅଧୀର ହୋଇ ପଡ଼ିଥିଲେ । ଜନତା ଭିତରୁ ନାରୀମାନେ ପ୍ରଥମେ ଗିରଫ ହେବାକୁ ବା ଗୁଳିରେ ଜୀବନ ଦେବାକୁ ଅଗ୍ରସର ହୋଇଥିଲେ । ପୁଣି ଥରେ ଗୁଳି ଚାଲିଲା ଓ ୫।୬ ଜଣ ଗୁଳି ମାଡ଼ରେ ଆହତ ହେଲେ । ମାତ୍ର ଗ୍ରାମବାସୀ ତିଲକ ସିଂହଙ୍କ ଶବର ପାଇ ଫେରି ଯାଇଥିଲେ । କାମପୁରର ଅଦମ ଅଧିବାସୀମାନେ ଏହି ସମୟରେ ଶାନ୍ତି ପୂର୍ଣ୍ଣ ଭାବରେ ଅନେକ ଥର ବିକ୍ଷୋଭ ପ୍ରଦର୍ଶନ କରି ଥିଲେ । ଥରେ ଜଣେ ବ୍ରିଟିଶ ସେନାପତିଙ୍କ ଅଧୀନରେ ଜଣେ ସୈନ୍ୟ ଗୋଟିଏ ଶାନ୍ତିସେନା ଶିବିର ପୋଡ଼ି ଦେଇ ଶାନ୍ତି ସେନା ମାନଙ୍କୁ ପ୍ରହାର କରିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଇଥିଲେ । ଗୋଟିଏ ସାହସୀ ବାଳକ ବାହାରି ପଡ଼ି ବ୍ରିଟିଶ ସେନାପତିଙ୍କୁ ବର୍ବର ଅତ୍ୟାଚାର କଥା ଜଣାଇଥିଲେ । ସେନାପତି ଏଥିରେ କ୍ରୋଧ ଜର୍ଜର ହୋଇ ପିଲାଟିକୁ ନେଇ ନିଆଁ ଭିତରେ ଫୋପାଡ଼ି ଦେଇଥିଲେ, ମାତ୍ର ସୌଭାଗ୍ୟ ବଶତଃ ପିଲାଟି ଗୁରୁଣ୍ଡି ଗୁରୁଣ୍ଡି ନିଆଁ ଭିତରୁ ବାହାରି ଆସିଥିଲା ।

ନଉଗଙ୍ଗର ପାଞ୍ଚ ମାଇଲ ଦୂରବର୍ତ୍ତୀ ବରହମପୁରର ଗ୍ରାମବାସୀ ଏହା ଅପେକ୍ଷା କଠୋର ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ବରହମପୁରର କଂଗ୍ରେସ ଭବନ ଓ ଶାନ୍ତି ସେନା ଶିବିର ପୋଲିସ ଜବର୍ ଦଖଲ କରି ତାଲା ପକାଇ ଜଗି ରହିଥିଲେ ମଧ୍ୟ ଗ୍ରାମବାସୀମାନେ ଦିନେ ସନ୍ଧ୍ୟାବେଳେ ଭୋଜି କରିବାକୁ ସେହି ଶାନ୍ତିସେନା ଅଫିସ ସମ୍ମୁଖରେ ସମବେତ ହୋଇଥିଲେ । ସେମାନେ ଭୋଜି, ସଙ୍ଗୀତରେ ଲିପ୍ତ ଥିଲା ବେଳେ ଜଣେ ସେନାପତି ଓ ଜଣେ ସରଜାଣ୍ଟ ଅଫିସର ଅଧୀନରେ ଦଳେ ସଶସ୍ତ୍ର ପୋଲିସ ଘଟଣା ସ୍ଥଳରେ ଆସି ପହଞ୍ଚିଗଲେ । ସେହି ସମୟରେ କେତେଜଣ ବାଳକ ଜାତୀୟ ପତାକା ହସ୍ତରେ ଧରି ଯାଉଥିବାବେଳେ ଗୋରା କମାଣ୍ଡର ୧୫ ବର୍ଷର ଗୋଟିଏ ବାଳକ ହାତରୁ ଜାତୀୟ ପତାକା ଛଡ଼ାଇ ନେବାକୁ ଚେଷ୍ଟାକଲା । ଏହି ସମୟରେ ସେହି ବାଳକର ମା ଖଣ୍ଡେ ବାଉଁଶ କଣି ଆଣି କମାଣ୍ଡରଙ୍କ ମୁଣ୍ଡରେ ଟିକିଏ ଠୁକେଇ ଦେଲା । ଏଥିରେ ହତ୍ୟାର ଏକ ବିଭୀଷିକା ଚାଲିଲା । ପୋଲିସ ଫଉଜ ବାଳକର ସେହି ବୃଦ୍ଧା ମାତାକୁ ସଙ୍ଗେ ସଙ୍ଗେ ଗୁଳି କରି ହତ୍ୟା କରିଥିଲେ । ବାଳକକୁ ରକ୍ଷା କରିବାକୁ ଖଗିରାମଙ୍କ ନେତୃତ୍ୱରେ ଯେଉଁ ଜନତା ଅଗ୍ରଣୀ ହୋଇ ଆସିଥିଲେ ତାଙ୍କୁ ଗୁଳି କରାଯାଇଥିଲା । ଖଗିରାମ ଓ ଆଉ ଦୁଇଜଣ ଯୁବକ ସେଠାରେ ଦୃଢ଼ ହୋଇ ଛିଡ଼ା ହୋଇ ରହି ଗୁଳି ଚେଷ୍ଟରେ ପ୍ରାଣ ହରାଇ-ଥିଲେ । ତା ପରେ ସେହି ଜନତା ମୃତ ଶବକୁ ଘେରି ଛିଡ଼ା ହୋଇ ରହିଥିଲେ । ଶେଷରେ ସମବେତ ଜନତା ମୃତ ଶବର ଫଟୋ ନେଇ ଏକ ବିରାଟ ଶୋଭାଯାତ୍ରାରେ ସେମାନଙ୍କୁ ଶ୍ମଶାନକୁ ନେଇ ଯାଇଥିଲେ । ୨୫ ବର୍ଷର ଯୁବକ ଖଗିରାମ ଦୋରଙ୍କ ବୀରତ୍ୱ

ସଂଗ୍ରାମରେ ଏକ ଅମର କାହାଣୀ ହୋଇ ରହିଛି । ମରିବାବେଳେ ସେ କହିଲେ—ମୋହର ଗୋଟିଏ ଫାଉଣ୍ଟେନପେନ ଗୋଟିଏ ଥଳି ଓ ଦଶଟି ପଇସା କଂଗ୍ରେସକୁ ଦାନ କରି ଦେଲି । ତାଙ୍କ ସ୍ତ୍ରୀ ବୀର ସ୍ୱାମୀଙ୍କ ମୃତ୍ୟୁରେ ଗୌରବ ଅନୁଭବ କରିଥିଲେ ।

ସେପ୍ଟେମ୍ବର ୨୦ ତାରିଖରେ ତୋହପୁରର ଜନସାଧାରଣ ଅହିଂସାର କଠୋର ପରୀକ୍ଷା ଦେଇଥିଲେ । ସେ ଦିନ ତୋହପୁରର ୫୦୦ ଲୋକ ଏକତ୍ର ହୋଇ ପୋଲିସ ଥାନା ଦଖଲ କରିବା ପାଇଁ ଯାଇଥିଲେ । ୧୪ ବର୍ଷର ବାଳିକା କନକଲତା ଏହାର ନେତୃତ୍ୱ ନେଇଥିଲା । ଥାନା ନିକଟରେ ୫୦୦୦ ଲୋକ ଏହା ଦେଖିବା ପାଇଁ ଜମା ହୋଇଥିଲେ । ଜନତା ଥାନା ନିକଟରେ ପହଞ୍ଚିଲାକ୍ଷଣି ପୋଲିସ ସତର୍କ କରାଇ ଦେଲେ ଯେ ଥାନା ଭିତରକୁ ପାଦ ଦିଅନା । ବାଳିକା ଉତ୍ତରଦେଲା—"ଏ ଥାନା ଜନସାଧାରଣଙ୍କର ପୋଲିସମାନେ ନିଜେ ଚାଲି ଯାଆନ୍ତୁ । ଜନତା ଥାନା ଦଖଲ କରିବେ ।" ଥାନା ଭିତରକୁ ଅଗ୍ରସର ହେବା ପାଇଁ କନକଲତା ଜନତାଙ୍କୁ ନିର୍ଦ୍ଦେଶ ଦେଲା ଏବଂ ନିଜେ ଅଗ୍ରସର ହେଲା । ସଙ୍ଗେ ସଙ୍ଗେ ସଶସ୍ତ୍ର ପୋଲିସ ତାକୁ ଗୁଳି କରି ମାରି ଦେଲେ । ତାପରେ ଯିଏ ଅଗ୍ରସର ହେଲା ତାକୁ ମଧ୍ୟ ଗୁଳି କରି ମାରି ଦିଆଗଲା । ଏହା ଭିତରେ ଦଳେ ସ୍ୱେଚ୍ଛାସେବକ ଥାନା ଉପରକୁ ଯାଇ ଜାତୀୟ ପତାକା ଉଡାଇ ଦେଇ ସାରିଥିଲେ । ଦଳେ ଜନତାଙ୍କ ଉପରେ ଅନେକ ସମୟ ପର୍ଯ୍ୟନ୍ତ ଗୁଳି ଚାଲିଥିଲା । ସରକାରୀ ହିସାବରୁ ପ୍ରକାଶ ଯେ ମୋଟେ ୯ ଜଣ ଗୁଳି ମାଡ଼ରେ ମରିଛନ୍ତି । ମାତ୍ର ପ୍ରକୃତରେ ୬୦ ଜଣ ମରିଥିଲେ, ୬୦ ଜଣ ଆହତ ହୋଇଥିଲେ । ଜଣେ ଗର୍ଭବତୀ ସ୍ତ୍ରୀ ଏହି ଗୁଳି ମାଡ଼ରେ ପ୍ରାଣ ହରାଇଥିଲେ ଓ ୭ ଜଣ ସ୍ତ୍ରୀ ଲୋକ ଆହତ ହୋଇଥିଲେ । ସମସ୍ତ

ଆସାମରେ ହଙ୍ଗାମାହଙ୍ଗାର ପୂରାପୂରି ବିବରଣୀ ଏ ପର୍ଯ୍ୟନ୍ତ ମିଳି ନାହିଁ । ପୋଲିସ ରିପୋର୍ଟରୁ ପ୍ରକାଶ ଯେ ୭ଟା ଜାଗାରେ ରେଲଗାଡ଼ି ଓଲଟାଇ ପକା ହୋଇଥିଲା । ଦୁଇ ଜାଗାରେ ଏହା ଫଳରେ ଅନେକ ଲୋକ ଜୀବନ ହରାଇ ଥିଲେ । ଗୌହାଟିଠାରୁ ୧୪ ମାଇଲ ଦୂରରେ ରେଲ ଓଲଟି ପଡ଼ିବା ଫଳରେ ୧୫୦ ଲୋକ ଜୀବନ ହରାଇ ଥିବାର ଅଶଙ୍କା କରା ଯାଉଛି ।

ଗଭର୍ଣ୍ଣମେଣ୍ଟଙ୍କ ଅମାନୁଷିକ ଅତ୍ୟାଚାର ଫଳରେ ଲୋକଙ୍କର ପ୍ରତିଶୋଧ ଲିପ୍‌ସା ଦିନକୁ ଦିନ ବୃଦ୍ଧି ପାଇଥିଲା । ଫଳରେ ଗୋଇନ୍ଦା ପୋଲିସଙ୍କୁ ହତ୍ୟା କରିବା, ସେମାନଙ୍କ ସମ୍ପତ୍ତି ଲୁଟ-ପାଟ କରିନେବା, ବନ୍ଧୁକ ଓ ସାଇକେଲ୍ ଛଡ଼ାଇ ନେଇ ଆସିବା ବ୍ୟାପି ଥିଲା । କେତେକ ସ୍ଥାନରେ ହାତ ବୋମା ତିଆରି ହୋଇ ଥିଲେକ, ଟେଲିଗ୍ରାଫ୍ ଅଫିସ, ରେଲ୍ ପ୍ଲାଟଫର୍ମ ଉପରେ ଫୁଟିଥିଲା । ୭ଟି କେସ୍ ଛଡ଼ା ପୋଲିସ ଏ ପର୍ଯ୍ୟନ୍ତ ଏହାର କୌଣସି ସନ୍ଧାନ ପାଇ ପାରିନାହିଁ । ଅସାମର ମୁକ୍ତି ସଂଗ୍ରାମରେ ନାରୀମାନେହିଁ ନେତୃତ୍ୱ ନେଇଥିଲେ । ଶତ ଶତ ନାରୀ ଏହି ସଂଗ୍ରାମରେ ପ୍ରତ୍ୟକ୍ଷ ଭାବରେ ଯୋଗ ଦେଇ ଗୁଳି ଆଗରେ ଛାତି ପତେଇ ଦେଇଛନ୍ତି ଓ ଲାଠି ମାଡ଼ରେ ଧୀର ସ୍ଥିର ରହି ଅହିଂସାର ପରୀକ୍ଷା ଦେଇଛନ୍ତି । ବରହମପୁର, ଗୋହପୁର ଓ ବରପୁଜିଆ ପ୍ରଭୃତି ସ୍ଥାନରେ ନାରୀମାନେ ଶୋଭାଯାତ୍ରାର ଅଗ୍ରଭାଗରେ ଥିଲେ । ଅସାମ ନାରୀଙ୍କର ଏହି ବୀରତ୍ୱ, ସାହସ ଓ ତ୍ୟାଗ ଅବର୍ଣ୍ଣନୀୟ । ସେହିମାନେ ପୁରୁଷଙ୍କ ପାଖେ ପାଖେ ଛିଡ଼ା ହୋଇ ମୁକ୍ତି ସଂଗ୍ରାମକୁ ଜୟଯୁକ୍ତ କରିଛନ୍ତି ଓ ଅସାମବାସୀଙ୍କୁ ଭାରତ ଇତିହାସରେ ଗୌରବ ଦାନ କରିଛନ୍ତି । ସେମାନଙ୍କ ବୀରତ୍ୱ ଭୁଲିବ କିଏ ?

# ବାଲିଆରେ ଜାତୀୟ ସରକାର

ସ୍ୱାଧୀନତା ସଂଗ୍ରାମରେ ପଣ୍ଡିତ ନେହରୁଙ୍କ ଯୁକ୍ତ ପ୍ରଦେଶ ଆଶାତୀତ ଭାବରେ ଗୌରବମୟ ଇତିହାସ ରଚନା କରିଛି । ନିଖିଳ ଭାରତ କଂଗ୍ରେସର କେନ୍ଦ୍ର ରାଜଧାନୀ ଏଲାହାବାଦ ଓ ହିନ୍ଦୁସ୍ଥାନ ନବଯୁବକର କେନ୍ଦ୍ର ଲକ୍ଷ୍ନୌରେ ଅଗଷ୍ଟ ବିପ୍ଳବ ବେଳେ ଯେଉଁ ଅପୂର୍ବ ସାହସ ଓ ଅବର୍ଣ୍ଣନୀୟ ବୀରତ୍ୱର କାହାଣୀ ରଚିତ ହୋଇଥିଲା ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ତାର ତୁଳନା ନାହିଁ । ଅଗଷ୍ଟ ୯ ତାରିଖ ଦିନ ସ୍ୱାଧୀନତା ସଂଗ୍ରାମର ସେନାପତି ଓ ସେନାପତି ମଣ୍ଡଳୀ ଶତ୍ରୁ ଶିବିରରେ ଯୁଦ୍ଧବନ୍ଦୀ ହୋଇ ରହିବା ପରେ ସର୍ବ ପ୍ରଥମେ ବମ୍ବେ ସହରର ନରନାରୀ ଓ ଯୁବକ ଯୁବତୀ ସ୍ୱାଧୀନତା ସଂଗ୍ରାମର ଶୁଭ ଦେଲେ । ମାତ୍ର ଲକ୍ଷ୍ନୌ ଓ ଏଲାହାବାଦର ଛାତ୍ରଛାତ୍ରୀମାନେ ଏହି ସଂଗ୍ରାମର ମଶାଲକୁ ବହୁଦିନ ପର୍ଯ୍ୟନ୍ତ ଜଳାଇ ରଖିଥିଲେ ଏବଂ ଭାରତର ଛାତ୍ର, ଯୁବକ, କୃଷକ ଓ ଶ୍ରମିକମାନଙ୍କୁ ପଥ ପ୍ରଦର୍ଶନ କରିଥିଲେ । ଅଗଷ୍ଟ ୯ ତାରିଖ ପରଠାରୁ ଲକ୍ଷ୍ନୌ ସହରର ଛାତ୍ରମାନେ ବିଶ୍ୱବିଦ୍ୟାଳୟ ତ୍ୟାଗ କରି ସହରରେ ଶତ ଶତ ଶୋଭାଯାତ୍ରା କରିଥିଲେ । ଏହିସବୁ ଶୋଭାଯାତ୍ରାରେ ଛାତ୍ରୀମାନେ ଅଗ୍ରଣୀ ହେଉଥିଲେ । ଏହି ବିରାଟ ଶୋଭାଯାତ୍ରା ହାଲେଟ ସରକାର ପକ୍ଷରେ ଅସହ୍ୟ ହୋଇ ଉଠିଥିଲା ଏବଂ ସରକାରର ସାମରିକ ଶକ୍ତି ଓ ପୋଲିସକୁ ଅପମାନ ଦେଉଛି ବୋଲି ଅମଲାତନ୍ତ୍ର ମନେ କରିଥିଲା । ତେଣୁ ହାଲେଟ ସରକାରର ସାମରିକ ଶକ୍ତି ଓ ପୋଲିସ ଛାତ୍ର ଛାତ୍ରୀମାନଙ୍କର ଏହି ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାକୁ ଛତ୍ରଭଙ୍ଗ କରିଦେବା ପାଇଁ ସମସ୍ତ ପ୍ରକାର ନିଷ୍ଠୁର ଓ ନିର୍ଲଜ ଉପାୟରେ ଲାଠି ଓ ଗୁଳି ମାଡ଼ର ଆଶ୍ରୟ ନେଇଥିଲେ ।

ଲକ୍ଷ୍ନୌ ଓ ଏଲାହାବାଦର ଛାତ୍ର ଛାତ୍ରୀମାନେ ଓ ଜନସାଧାରଣ ଏହି ଲାଠିମାଡ଼ ଓ ଗୁଳିମାଡ଼ ସମ୍ମୁଖରେ ଅପୂର୍ବ ସାହସ ଦେଖାଇ ଯେଉଁ ଦୃଷ୍ଟାନ୍ତ ଦେଖାଇଲେ ତାହା ଭାରତର ପ୍ରତ୍ୟେକ ଛାତ୍ର ଛାତ୍ରୀ କୃଷକ ଓ ଶ୍ରମିକ ହୃଦୟରେ ସାହସ ଦେଲା; ମନରେ ବଳ ଦେଲା ଏବଂ ଶରୀରରେ ଶକ୍ତି ସଞ୍ଚାର କରିଦେଲା । ଲକ୍ଷ୍ନୌ ସହରର ଛାତ୍ର ଶୋଭାଯାତ୍ରାରେ ଅଗ୍ରଣୀ ହୋଇ ଛାତ୍ରୀମାନେ ପ୍ରଥମେ ଗୁଳି ଆଗରେ ଛାତି ପତେଇ ଦେଇଥିଲେ । ଆଜି ସେ କଥା ଭାରତରେ କିଏ ଭୁଲି ପାରିବ ? ଆଜି କିଏ ବା ଭୁଲିଯିବ ଲକ୍ଷ୍ନୌ ଛାତ୍ର ଛାତ୍ରୀଙ୍କର ଏହି ଗୌରବ ଓ ସାହସରେ ହତବୁଦ୍ଧି ହୋଇ ହାଲେଟ ସରକାର ସର୍ବପ୍ରଥମେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ ବନ୍ଦ କରି ଦେଇଥିଲେ । ଲକ୍ଷ୍ନୌର ଛାତ୍ରଛାତ୍ରୀମାନେ ନିଜ କର୍ମକ୍ଷେତ୍ରକୁ ସହର ଭିତରେ ଅବଦ୍ଧ ନ ରଖି ପଲ୍ଲୀ ଅଞ୍ଚଳରେ ଖେଳେଇ ହୋଇଯାଇ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିଥିଲେ । ତେଣୁ କଂଗ୍ରେସ କର୍ମୀ, ଛାତ୍ର ଓ ଛାତ୍ରୀମାନଙ୍କର ଉଦ୍ୟମରେ ଯୁକ୍ତ ପ୍ରଦେଶର ପ୍ରତ୍ୟେକ ଅଞ୍ଚଳରେ ଅଗଷ୍ଟ ବିପ୍ଳବର ବାଣୀ ପ୍ରଚାରିତ ହେଲା ଓ ଚାରିଆଡ଼େ ବିପ୍ଳବର ନିଆଁ ଜଳି ଉଠିଲା । ହାଲେଟ ସରକାର ଯାହା ଭାବି ଥିଲା କୋଟି କୋଟି ଜନତାର ମୁଖପତ୍ର 'ନାସନାଲ୍ ହେରଲ୍ଡ଼୍' ବନ୍ଦ କରି ଦେଇ ମୁକ୍ତି ସଂଗ୍ରାମର ବାର୍ତ୍ତାକୁ ଅଟକାଇ ଦେବ ବୋଲି ତା ହୋଇ ପାରିଲା ନାହିଁ । ଲକ୍ଷ୍ନୌ ଏଲାହାବାଦର ପ୍ରତ୍ୟେକ ଛାତ୍ର ଓ ଛାତ୍ରୀ ଗୋଟିଏ ୨ "ନାସନାଲ୍ ହେରାଲ୍ଡ଼୍" ହୋଇ ବାହାରି ପଡ଼ିଲେ ଓ ଯୁକ୍ତ ପ୍ରଦେଶର ପ୍ରତି ପୁରପଲ୍ଲୀର ଘରେ ଘରେ 'ଭାରତ ଛାଡ଼' ଓ 'କର ବା ମର' ବାଣୀ ଶୁଣାଇଲେ ଫଳରେ ଦେଶର କୃଷକ ଓ ଶ୍ରମିକଙ୍କ ଭିତରେ ସ୍ୱାଧୀନତାର ଅପୂର୍ବ ପିପାସା ଜାଗି ଉଠିଥିଲା । ସୁଦୂର ହିମାଳୟର ଅଲମୋରାଠାରୁ

ଆରମ୍ଭ କରି ବାଲିଆର ଜନସାଧାରଣ ଏହି ସ୍ୱାଧୀନତାର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ନିଜ ଭିତରେ ଅପୂର୍ବ ସଂହତି ଶକ୍ତିର ପରିଚୟ ଦେଇ ଯେଉଁ ବୀରତ୍ୱ କାହାଣୀ ରଚନା କରି ଦେଇ ଯାଇଅଛନ୍ତି ସେଥିପାଇଁ କେବଳ ଯୁକ୍ତ ପ୍ରଦେଶ ନୁହେଁ ସମଗ୍ର ଭାରତବାସୀ ଙ୍କେ ଓ ଗୌରବ ଅନୁଭବ କରୁଥିବେ ।

ଅଗଷ୍ଟ ଆନ୍ଦୋଳନ ବେଳେ ବାଲିଆରେ ଯେଉଁ ଜନତା ସରକାର ପ୍ରତିଷ୍ଠିତ ହୋଇଥିଲା ଏବେ ନିକଟରେ ତାର ଏକ ବିବରଣୀ ସ୍ଥାନୀୟ କଂଗ୍ରେସ ମହଲ ପ୍ରକାଶ କରିଛନ୍ତି । ପୋଲିସ ଓ ସୈନ୍ୟ ଫଉଜଙ୍କ ନିର୍ମମ ଅତ୍ୟାଚାର ଓ ଦମନଲୀଳା ସତ୍ତ୍ୱେ ବାଲିଆର ଜନସାଧାରଣ ପୋଷ୍ଟ ଅଫିସ ଓ ଅନ୍ୟାନ୍ୟ ସରକାରୀ ଅଫିସମାନ ଦଖଲ କରିନେଇ ବାଲିଆ ସହର ଅଧିକାର କରି ନିଜ ଶାସନରେ କିଛି ଦିନ ରଖିଥିଲେ । ସୈନ୍ୟ ଫଉଜ ବାଲିଆ ସହରରେ ପହଞ୍ଚିବା ପର୍ଯ୍ୟନ୍ତ ଜନସାଧାରଣ ଏହି ସହରକୁ ନିଜ ଶାସନରେ ରଖିଥିଲେ । ଅନେକ ସ୍ଥାନରେ ସୈନ୍ୟ ଫଉଜ ଓ ଜନସାଧାରଣଙ୍କ ଭିତରେ ଘୋର ସଂଗ୍ରାମ ହେବା ପରେ କର୍ତ୍ତୃପକ୍ଷ ଏହି ଅଞ୍ଚଳ ନିଜ କର୍ତ୍ତୃତ୍ୱକୁ ଆଣି ପାରିଥିଲେ । ଅଗଷ୍ଟ ୯ ତାରିଖ ଉପର ବେଳା ବମ୍ବେଠାରେ ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନେ ଗିରଫ ହୋଇଯିବା ସମ୍ବାଦ ପହଞ୍ଚିବା ମାତ୍ରେ ବାଲିଆର ସବୁଆଡ଼େ ହରତାଳ ପାଳିତ ହୋଇଥିଲା । ୧୦ ତାରିଖ ଦିନ ସବୁଆଡ଼େ ପୂର୍ଣ୍ଣ ଭାବରେ ହରତାଳ ପାଳିତ ହେଲା । ଅଗଷ୍ଟ ୧୧ ତାରିଖ ଦିନ ବାଲିଆର ଛାତ୍ରମାନେ ଏକ ଶୋଭାଯାତ୍ରାରେ ସହରର ପୋଲିସ ଥାନା ଆଡ଼କୁ ଅଗ୍ରସର ହେଲେ । ଜିଲା ମାଜିଷ୍ଟ୍ରେଟ ଛାତ୍ରମାନଙ୍କୁ ଅଗ୍ରସର ନ ହେବାପାଇଁ ସତର୍କ କରିଦେବା ସତ୍ତ୍ୱେ କିଛି ଫଳ ନ ହେବାରୁ ଛାତ୍ରମାନଙ୍କ

ଉପରେ ଲାଠିମାଡ଼ ହେଲା ଏବଂ ଲୋକମାନଙ୍କ ଭିତରୁ କେତେକ ଆହତ ହୋଇଥିଲେ । ଅଗଷ୍ଟ ତା ୧୧ ଓ ୧୨ ରିଖ ରାତିରେ ପୋଲିସ ଲୋକମାନଙ୍କ ଘର ଘେରାଉ କରି ଖାନତଲାସ କରିଥିଲେ ଏବଂ ୪୦ ଜଣ ଲୋକଙ୍କୁ ଗିରଫ କରି ନେଇଥିଲେ । ଅଗଷ୍ଟ ତା ୧୨ ଓ ୧୩ ରିଖ ଦିନ ବାଲିଆର ସମସ୍ତ ଯୋଗାଯୋଗ ସମ୍ବନ୍ଧ କାଟି ଦିଆ ହେଲା ଓ ବାଲିଆ ରେଲବାଇ ଷ୍ଟେସନକୁ ପୋଡ଼ି ଦିଆ ହେଲା ଏବଂ ଯେଉଁ ସବୁ କଂଗ୍ରେସ ଅଫିସମାନଙ୍କୁ ପୋଲିସ ଦଖଲ କରି ନେଇଥିଲେ ସେଗୁଡ଼ିକୁ ପୋଲିସମାନଙ୍କଠାରୁ ପୁଣି ଦଖଲ କରି ନିଆ ହେଲା । ଅଗଷ୍ଟ ୧୬ ତାରିଖ ଦିନ ସହର ଭିତରେ ପୋଲିସ ଗୁଳି ଚଳାଇଥିଲେ ଓ ଫଳରେ ୯ ଜଣ ମରିଥିଲେ ଓ ଓ ଅନେକ ଲୋକ ଆହତ ହୋଇଥିଲେ । ଅଗଷ୍ଟ ୧୭ ତାରିଖ ଦିନ ରସ୍ତା ତହସିଲର ଖଜଣାଖାନାକୁ ଲୁଟ କରାଯାଇ ଦଖଲ କରି ନିଆ ହେଲା ଓ ଜନସାଧାରଣ ପୋଲିସ ଷ୍ଟେସନ ଉପରେ ଆକ୍ରମଣ କରିବାରୁ ପୋଲିସ ଗୁଳି ଚଳାଇ ୯ ଜଣଙ୍କୁ ମାରି ଦେଇଥିଲେ । ଅଗଷ୍ଟ ୧୯ ତାରିଖ ଦିନ ବାଲିଆ ସହରକୁ ଆକ୍ରମଣ କରିବାକୁ ଓ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ବନ୍ଦୀ କରି ରଖିବାକୁ ଜନସାଧାରଣ ସ୍ଥିର କରିଥିଲେ । ଅଉ ମଧ୍ୟ ଜିଲ୍ଲା ଜେଲକୁ ଭାଙ୍ଗି ଦେବାପାଇଁ ଯୋଜନା କରା ଯାଇଥିଲା । ମାତ୍ର ବାଲିଆର ଜିଲ୍ଲା ମାଜିଷ୍ଟ୍ରେଟ ବାଲିଆର କଂଗ୍ରେସ ନେତା ଚିତୁ ପାଣ୍ଡେଙ୍କୁ ଜେଲରୁ ଖଲାସ କରି ଦେଇ ତାଙ୍କ ନିକଟରେ ଆତ୍ମ ସମର୍ପଣ କରିଦେଲେ । ତା ପରେ ବାଲିଆରେ ଜନସାଧାରଣଙ୍କ ରାଜତ୍ୱ ପ୍ରତିଷ୍ଠିତ ହେଲା ଏବଂ ଢେଣ୍ଡୁରା ଦେଇ ଚାରିଆଡ଼େ ଏହା ଘୋଷଣା କରି ଦିଆ ହେଲା । ଚାରିଦିନ କାଳ ବାଲିଆରେ ଏହି ସ୍ୱାଧୀନ ସରକାର ଚାଲିଲା ଏବଂ ତା ପରେ ସୈନ୍ୟ ଫଉଜ ଆସି ପହଞ୍ଚିଲେ ।

ସୈନ୍ୟ ଓ ଜନସାଧାରଣଙ୍କ ଭିତରେ ଅନେକ ସ୍ଥାନରେ ଘୋର ସଂଗ୍ରାମ ହେବା ପରେ ଅମଲାତନ୍ତ୍ର ପୁଣି ବାଲିଆକୁ ଦଖଲ କରି ନେଇଥିଲେ । ଏହି ଆନ୍ଦୋଳନ ବେଳେ ରାସ୍ତା ଗାଁରେ ଯେଉଁ ଅତ୍ୟାଚାର ହୋଇଥିଲା, ସେହି ଅତ୍ୟାଚାରର କାହାଣୀ ପଣ୍ଡିତ ନେହେରୁ ଭାଷଣ ଦେବାପାଇଁ ଆୟୋଜନ କରି ଯାଇଥିବା ୩୦,୦୦୦ ଲୋକଙ୍କର ଏକ ସାଧାରଣ ସଭାରେ ସ୍ଥାନୀୟ କଂଗ୍ରେସ ନେତା ଟି. ୟୁସୁଫ୍ ବର୍ଣ୍ଣନା କରି କହିଥିଲେ ଯେ ଜଣେ ଲୋକକୁ ଗୋଟାଏ ହାତୀ ଗୋଡ଼ରେ ବାନ୍ଧି ଦିଆ ହୋଇ ଟାଣି ଟାଣି ନିଆ ହୋଇଥିଲା । ଘରେ ପଶି ପୋଲିସ ଲୁଟି କରି ନେଇଥିଲେ ଓ ଘରପୋଡ଼ି ପକାଇଥିଲେ । ସ୍ତ୍ରୀ ଲୋକମାନଙ୍କୁ ଘର ଭିତରୁ ଟାଣି ଆଣି ରାସ୍ତା ମଝିରେ ସେମାନଙ୍କୁ ଉଲଗ୍ନ କରି ଛୁରା କରି ଦିଆ ହୋଇଥିଲା । ସେତେବେଳେ ଗାନ୍ଧୀ ଟୋପି ପିନ୍ଧିବା ଗୋଟିଏ ଅପରାଧ । ତଥାପି ରାସ୍ତାର ଜନସାଧାରଣ ପ୍ରତ୍ୟେକ ଅଫିସ ଦଖଲ କରି ରାସ୍ତାକୁ ଶାସନ କରିଥିଲେ ।

ଗତବର୍ଷ ଅକ୍ଟୋବର ମାସରେ ପଣ୍ଡିତ ନେହେରୁ ବାଲିଆ ପ୍ରଭୃତି ସ୍ଥାନରେ ଗସ୍ତ କରୁଥିବା ବେଳେ ବାଲିଆର ୨୦ ମାଇଲ ଦୂରରେ ଥିବା ବଇରିଆ ନାମକ ସ୍ଥାନରେ ଏକ ସାଧାରଣ ସଭାରେ ଭାଷଣ ଦେଉଥିବା ବେଳେ ବଇରିଆଠାରେ ଗୋଟିଏ ବାଳକ ଜାତୀୟ ପତାକାର ସମ୍ମାନ ରକ୍ଷା କରିବାପାଇଁ କିପରି ଜୀବନ ଦେଇଥିଲା ତାହା ବର୍ଣ୍ଣନା କରି କହିଥିଲେ—ସେହି ବାଳକଟି ବଇରିଆ ପୋଲିସ ଷ୍ଟେସନ ଉପରେ ଜାତୀୟ ପତାକା ଉଡ଼ାଇବାପାଇଁ ଯାଇଥିଲା । ପୋଲିସ ତାକୁ ଧମକେଇ ଥିଲେ ଯେ ଜାତୀୟ ପତାକା ଉଡ଼ାଇବାକୁ ଯଦି ସେ ପାଦେ ଅଗ୍ରସର ହୁଏ ତା ହେଲେ ଫଳ ବିଷମୟ ହେବ । ମାତ୍ର ସେହି ବାଳକ

ସେଥିପ୍ରତି କର୍ଣ୍ଣପାତ କଲ ନାହିଁ । ସେ ସିଧା ଉପରକୁ ଉଠି ପୋଲିସର ସମ୍ମୁଖୀନ ହେଲେ ଓ ପୋଲିସର ଗୁଳିରେ ଜୀବନ ଦେଲ । ପଣ୍ଡିତଜୀ କହିଥିଲେ ଯେ ଭାରତ କେବେ ହେଲେ ସେହି ବାଳକଟିକୁ ଭୁଲି ପାରିବ ନାହିଁ । ଗତ ଅଗଷ୍ଟ ଆନ୍ଦୋଳନ ବେଳେ ଏହି ବଲିଆଠାରେ ପୋଲିସ ଓ ଜନସାଧାରଣଙ୍କ ଭିତରେ ସଂଘର୍ଷ ହୋଇ ୨୨ ଜଣ ଲୋକ ପୋଲିସର ଗୁଳିରେ ଜୀବନ ଦେଇଥିଲେ ଓ ଅନେକ ଲୋକ ଆହତ ହୋଇଥିଲେ । ତା ପରେ ଜନସାଧାରଣ ବଲିଆ ପୋଲିସ୍ ଷ୍ଟେସନକୁ ଦଖଲ କରି ନେଇଥିଲେ । ବଲିଆର ଜନସାଧାରଣ ଏହି ସମୟରେ ଘୋର ଅପମାନ ଓ ଲଜ୍ଜା ସହ୍ୟ କରିଛନ୍ତି । ବଲିଆରେ ଏହିପରି ଏକ ନିୟମ ଜାରି କରାଯାଇଥିଲା ଯେ ପୋଲିସ ଷ୍ଟେସନ ବାଟେ ଗଲାବେଳେ ସମସ୍ତଙ୍କୁ ପୋଲିସ ଷ୍ଟେସନକୁ ସଲାମ କରିବାକୁ ହେବ ଏମିତିକି ରାସ୍ତାରେ ଓ ଅନ୍ୟାନ୍ୟ ସ୍ଥାନରେ ଜଗିରହିଥିବା ପୋଲିସ କନଷ୍ଟେବଲକୁ ସଲାମ କରିବାପାଇଁ ଲୋକମାନଙ୍କୁ ବାଧ୍ୟ କରାଯାଇଥିଲା । ୧୯୨୧ ଆନ୍ଦୋଳନ ବେଳେ ମହାତ୍ମା ଗାନ୍ଧି ୟଙ୍ଗ୍ ଇଣ୍ଡିଆ ପତ୍ରିକାରେ ଲେଖିଥିଲେ ଯେ ବାଲିଆ ଯୁକ୍ତ ପ୍ରଦେଶର ବର୍ଦୋଲି ।

## ଆଲମୋରାରେ ଭାରତ ଛାଡ଼

ଗତ ୧୯୪୨ ଅଗଷ୍ଟର 'ଭାରତ ଛାଡ଼' ସଂଗ୍ରାମରେ ଅଗ୍ନିଶମ୍ଭର ବାଲିଆ, ସତାରା ଓ ବିହାର ବଙ୍ଗଳାର କେତେକ ଜିଲ୍ଲା ଚମତ୍କାର କାମ କରିଥିଲେ ଓ ସେହିସବୁ କାମ ସାଧାରଣରେ ପ୍ରକାଶ କରାଯାଇଛି । ସୁଦୂର ହିମାଳୟର ଅଲମୋରା ଜିଲ୍ଲା ଏହି ସଂଗ୍ରାମରେ ଆଶାନୁରୂପ ଦାନ ଦେଇଥିଲେ ମଧ୍ୟ ନାନାଦି ଅସୁବିଧା ଯୋଗୁଁ

ଏହା ସାଧାରଣରେ ପ୍ରକାଶ ପାଇ ପାରି ନାହିଁ । ପ୍ରଥମତଃ ଏହି ଜିଲ୍ଲାରେ ରେଲ୍ ରାସ୍ତାର ନାମ ଗନ୍ଧ ନାହିଁ । ଯାତାୟାତର ସୁବିଧା ଅତି ସାମାନ୍ୟ । ଏଠାରେ ସେଭଳି କୌଣସି ସମ୍ବାଦ ପତ୍ର ମଧ୍ୟ ନାହିଁ । ଅଗଷ୍ଟ ୯ ତାରିଖ ପରେ ଯେତେବେଳେ ସମଗ୍ର ଅଲମୋରାର ଅର୍ଡିନାନ୍ସର ରାଜତ୍ୱ ଚାଲିଲା, ସେତେବେଳେ ବାହାର ଜଗତ ସଙ୍ଗେ ସମ୍ପର୍କ ରଖିବା ଅଧିକ କଷ୍ଟକର ହୋଇ ପଡ଼ିଲା । ଯେଉଁ ଲୋକ ବାହାରେ କିଛି ପ୍ରକାଶ କରି ଦେବାର ଯଦି ସନ୍ଦେହ କରାଯାଉଥିଲା ତା ହେଲେ କର୍ତ୍ତୃପକ୍ଷ ତାଙ୍କୁ ନେଇ ସଙ୍ଗେ ସଙ୍ଗେ ଜେଲରେ ବନ୍ଦୀ କରି ଦେଉଥିଲେ । ତେଣୁ ଅଲମୋରାର ଜନସାଧାରଣଙ୍କ ବୀରତ୍ୱପୂର୍ଣ୍ଣ ସଂଗ୍ରାମକାହାଣୀ ବାହାର ଜଗତ କେବଳ ୧୯୨୪ରେ ଜାଣି ପାରିଥିଲା । ପୁଣି ମହାତ୍ମାଗାନ୍ଧୀଙ୍କ ଜର୍ମାନୀ ଶିଷ୍ୟା ସରଳାବେନ୍‌ଙ୍କ ଯୋଗୁଁ ଏହି ସବୁ କାହାଣୀ ପ୍ରକାଶ ପାଇଥିଲା ।

ଅଗଷ୍ଟ ୯ ତାରିଖ ସକାଳ ବେଳା ଅଲମୋରାର ସ୍ଥିରଅଡ଼େ ମହାତ୍ମାଗାନ୍ଧୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କ ଗିରଫ ଖବର ବ୍ୟାପିଗଲା ଏବଂ ସଙ୍ଗେ ସଙ୍ଗେ ଗୋଟିଏ ଅଲମୋରା ସହରଟିରେ ପୋଲିସ ରାଜତ୍ୱ ଆରମ୍ଭ ହୋଇଗଲା । ଅଲମୋରା ସହର ତଥା ପ୍ରାନ୍ତପଲ୍ଲୀର କଂଗ୍ରେସ କର୍ମୀଙ୍କୁ ତୁରନ୍ତ ଗିରଫ କରି ଜେଲରେ ବନ୍ଦୀ କରି ଦିଆଗଲା । କିନ୍ତୁ ଜନସାଧାରଣ ଏହି ଆକ୍ରମଣକୁ ମୁଣ୍ଡ ପାତି ସହି ନେଇ ନ ଥିଲେ । ସେମାନେ ଏହି ଆକ୍ରମଣର ପ୍ରତିରୋଧ କରିଥିଲେ ଏବଂ ଏପରି ସଫଳତା ସହ ପ୍ରତିରୋଧ କରି ଥିଲେ ଯେ ଶେଷରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବାପାଇଁ କର୍ତ୍ତୃପକ୍ଷଙ୍କୁ ସୈନ୍ୟ ସାହାଯ୍ୟ ଆଣିବାକୁ ପଡ଼ିଲା । ପ୍ରକାଶ୍ୟ ଓ ଗୋପନୀୟ ଉଭୟ ପ୍ରକାର କାମ ଚାଲିଥିଲା । ଜନସାଧାରଣଙ୍କୁ କେହି ନେତୃତ୍ୱ

ଦେବାକୁ ନ ଥିଲେ କି ସେମାନଙ୍କ ଆଗରେ କୌଣସି ନିର୍ଦ୍ଦିଷ୍ଟ କର୍ମପନ୍ଥା ନ ଥିଲା । ମାତ୍ର ତଥାପି ଜନସାଧାରଣ ଦୃଢ଼ ହୋଇବସି ନ ଥିଲେ । ସେମାନେ ଆପଣା ଛଏଁ ଖଜଣାବନ୍ଦ ଆନ୍ଦୋଳନ ଓ ଜଙ୍ଗଲ ଆଇନ ଅମାନ୍ୟ ଆରମ୍ଭ କରି ଦେଇଥିଲେ । ଏହି ସବୁ ଆନ୍ଦୋଳନ ଏପରି ସଂଗଠିତ ଭାବରେ ଚାଲିଥିଲା ଯେ ଜଣାପଡ଼ୁଥିଲା ଯେପରି ଏଠି ଆଉ କେହି ପ୍ରବେଶ କରି ପାରିବେ ନାହିଁ । ସରନ୍ଦୁ ନଦୀ କୂଳରେ ଥିବା ଗଣେଶ୍ୱର ଜଳ ସ୍ଥାନରେ ତେତେ ମାସ ପର୍ଯ୍ୟନ୍ତ ବ୍ରିଟିଶ ସରକାରର ଅସ୍ତିତ୍ୱ ନ ଥିଲା । କେବଳ ଛାଠ ଓ ବ୍ରିଟିଶ ସୈନ୍ୟମାନେ ଆସି ପହଞ୍ଚି ଆତଙ୍କର ରାଜତ୍ୱ ଚଳାଇ ଜନତା ସରକାରକୁ ଲୋପ କରି ପାରିଥିଲେ । ସାଲ୍ଲନ ଓ ସଲ୍ଟରେ ଖଜଣା ବନ୍ଦ ଆନ୍ଦୋଳନ ଏପରି ସଂଗଠିତ ଭାବରେ ଚାଲିଥିଲା ଯେ ସ୍ଥାନୀୟ ପଟେଲ ବା ତହସିଲଦାରମାନେ ଖଜଣା ଆଦାୟ କରି ପାରି ନ ଥିଲେ ଏବଂ ଶେଷରେ ସୈନ୍ୟ ଫଉଜଙ୍କୁ ଡାକି ଆଣିବାକୁ ପଡ଼ିଥିଲା । ସୈନ୍ୟମାନେ ଆସି କୃଷିକ୍ଷେତ୍ରରୁ ଫସଲ କାଟିଆଣି ଖଜଣା ଆଦାୟ କରିଥିଲେ ।

ଜିଲ୍ଲାର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଘରେ ଘରେ "ଭାରତଛାଡ଼" ପ୍ରସ୍ତବଜ ହୋଇଥିଲା । ଜଙ୍ଗଲ ସତ୍ୟାଗ୍ରହ ପୂର୍ବରୁ ପତାକା ଅଭିବାଦନ ଓ ସାଧାରଣ ସଭା ଦୈନନ୍ଦିନ ବ୍ୟାପାର ହୋଇ ଯାଇଥିଲା । ଛାତ୍ରମାନେ ଏହି ଆନ୍ଦୋଳନରେ ପୂରାପୂରି ଭାଗ ନେଇଥିଲେ । ଅନେକ ଛାତ୍ର ଗିରଫ ହୋଇଥିଲେ । ଅନେକ ଶିକ୍ଷାନୁଷ୍ଠାନମାନଙ୍କରୁ ତଡ଼ା ଖାଇଥିଲେ । ଅନେକ ଛାତ୍ର ଏ ପର୍ଯ୍ୟନ୍ତ ଜେଲ୍ ଭୋଗୁଛନ୍ତି । ଅଗଷ୍ଟ ତା ୧୧ରିଖ ଦିନ କଂଗ୍ରେସ-କର୍ମୀମାନେ ଜେଲରେ ଥିବା ଅବସ୍ଥାରେ ଡେପୁଟି କମିଶନର, ଜିଲ୍ଲା ମାଜିଷ୍ଟ୍ରେଟ ଓ ସଶସ୍ତ୍ର ସୈନ୍ୟ ବାହିନୀ ସହିତ ଆଲମୋଡ଼ା

ସହର ସ୍କୁଲପଟେ ବୁଲିବାକୁ ଆସିଥିଲେ । ସେମାନେ ଅସୁଥିବା-ବେଳେ ବାଟରେ ଛାତ୍ରମାନଙ୍କର ଶୋଭାଯାତ୍ରାକୁ ଭେଟି ଥିଲେ । ଜାତୀୟ ପତାକା ହସ୍ତରେ ଶୋଭାଯାତ୍ରାର ଦୃଶ୍ୟ ଡେପୁଟି-କମିଶନରଙ୍କ ପକ୍ଷରେ ବଡ଼ ଅସହ୍ୟ ହୋଇ ପଡ଼ିଲା । ସେ ସଙ୍ଗେ ସଙ୍ଗେ ଦୌଡ଼ିଯାଇ ଗୋଟିଏ ପିଲା ହାତରୁ ଜାତୀୟ ପତାକା ଛଡ଼ାଇ ନେଇ ତଳେ ପକାଇଥିଲେ । ଛାତ୍ରମାନଙ୍କ ପକ୍ଷରେ ମଧ୍ୟ ଏ ଦୃଶ୍ୟ ଅସହ୍ୟ ହୋଇ ପଡ଼ିଲା । ଏହି ସମୟରେ ଖଣ୍ଡେ ପଥର ଆସି ଡେପୁଟି କମିଶନରଙ୍କ ମୁଣ୍ଡରେ ବସିଲା । ପ୍ରକୃତରେ କିଏ ସେ ଢେଲା ଫୋପାଡ଼ିଲା ଏ ପର୍ଯ୍ୟନ୍ତ ତା କେହି ଜାଣନ୍ତି ନାହିଁ । ମାତ୍ର ଏହା ପରେ ସମଗ୍ର ଅଲମୋରାରେ ପୋଲିସ ରାଜତ୍ୱ ଖୋଲିଲା ଏବଂ ଅଲମୋରା ସହରରେ ପୂରା ଦୁଇମାସକାଳ ସୈନ୍ୟମାନେ ଲାଗି ରହିଲେ । ଅନେକ ଛାତ୍ର ଏହାର ଫଳରେ ପ୍ରାଣ ହରାଇଛନ୍ତି ।

କିନ୍ତୁ ଏହି ଆନ୍ଦୋଳନରେ ପୋଲିସର ଦୃଷ୍ଟି ଅନ୍ତରାଳରେ ରହିଥିବା କର୍ମୀମାନେ ପ୍ରକୃତ କାମ କରିଛନ୍ତି । ସେମାନେ ଗିରଫ ନ ହୋଇ ବହୁଦିନ ପର୍ଯ୍ୟନ୍ତ କର୍ତ୍ତୃପକ୍ଷଙ୍କୁ ହଇରାଣ କରିଛନ୍ତି । ଶ୍ରୀଯୁକ୍ତ ଏମ୍, ଉପାଧ୍ୟାୟଙ୍କୁ ସବୁବେଳେ କର୍ତ୍ତୃପକ୍ଷ ଜଣେ 'ବିପଜ୍ଜନକ' ଲୋକ ବୋଲି ମନେ କରୁଥିଲେ । ତେଣୁ ଅଗଷ୍ଟ ୧୦ କିମ୍ବା ୧୨ ତାରିଖ ଦିନ ତାଙ୍କୁ ଗିରଫ କରି ଅଲମୋରା ଜେଲକୁ ନେଉଥିବାବେଳେ ଦିନେ ରାତରେ ଖସି ପଳାଇଥିଲେ ଏବଂ ତାଙ୍କୁ ଗିରଫ କରିବାକୁ ସରକାର ୫୨୦୦୦ ପୁରସ୍କାର ଘୋଷଣା କରିଥିଲେ । ଶ୍ରୀଯୁକ୍ତ ଉପାଧ୍ୟାୟ ବାହାରେ ରହି ଆନ୍ଦୋଳନ ଚଳେଇଥିଲେ । ବହୁଦିନ ପରେ, ଏହି କେତେମାସ ତଳେ ସେ ଗିରଫ ହୋଇଛନ୍ତି । ଶ୍ରୀଯୁକ୍ତ ଡଃ ଏନ୍. ପାଣ୍ଡେ ଅନେକ ବର୍ଷକାଳ ପୋଲିସ ଦୃଷ୍ଟି ଅନ୍ତରାଳରେ ରହି ଆନ୍ଦୋଳନ

ପରସ୍ତଳନା କରଥିଲେ । ସାଲ୍ଟ ( ଗାଲ୍ ସବଡ଼ିଭିଜନ ) ରେ ସୈନ୍ୟ ଫଉଜଙ୍କର ଗୁଳିମାଡ଼ରେ ୯ ଜଣ ଲୋକ ଜୀବନ ହରାଇଛନ୍ତି । ଅନେକ ଲୋକ ଅଳ୍ପରେ ବର୍ତ୍ତି ଯାଇ ପାରଛନ୍ତି । ସାଲାମ ଗାଁ ମାନଙ୍କରେ ଜାଠ ସୈନ୍ୟବାହୁନୀଙ୍କୁ ଗାଁ ଜଗିବାକୁ ପଠା ହୋଇଥିଲା । ଏହି ସୈନ୍ୟମାନେ ନିର୍ମମ ଅତ୍ୟାଚାର ଓ ପାଶବିକତା କର ସ୍ତ୍ରୀଅପେକ୍ଷା ଅଧିକ ସୃଷ୍ଟି କରିଥିଲେ । ଏହି-ମାନଙ୍କ ଭୟରେ ସ୍ତ୍ରୀଲୋକମାନେ ସୈନ୍ୟମାନଙ୍କ ଅତ୍ୟାଚାର ଭୟରେ କୂଅରୁ ପାଣି ନେବାକୁ ଆସିପାରୁ ନ ଥିଲେ । ଦରିଦ୍ର ଗ୍ରାମବାସୀଙ୍କ ଖର୍ଚ୍ଚରେ ସୈନ୍ୟମାନଙ୍କ ଖାଇବା ପିଇବା ବ୍ୟବସ୍ଥା ହୋଇଥିଲା । ସାଲମ ନିକଟବର୍ତ୍ତୀ କଳ୍ପନ୍ତୀ ଗ୍ରାମରେ ଗ୍ରାମରେ ଜାତୀୟ ପତାକାକୁ ଅଭିବାଦନ କରିବାକୁ ଏକତ୍ରିତ ହୋଇଥିବା ଏକ ହଜାର ଗ୍ରାମବାସୀଙ୍କ ଉପରେ ଗୁଳି ଚଳେଇବାକୁ ଆଦେଶ ହୋଇଥିଲା । ଅଜ କେହି ଜାଣେନା ସେଠି କେତେ ଲୋକ ଜୀବନ ହରାଇ ଥିଲେ । ଅନେକ ଲୋକ କଣ୍ଠସ୍ଥ ପ୍ରାଣ ହରାଇଥିବେ । କିନ୍ତୁ ଏକଥା ସତ ଯେ ଜଣେ ଲୋକ ସେହି ସ୍ଥାନରେ ମର ଯାଇ ଥିଲା ଏବଂ ତାକୁ ପାହାଡ଼ରୁ ତଳକୁ ନିର୍ମମ ଭାବରେ ଫିଙ୍ଗାଇ ଦିଆ ହୋଇଥିଲା । ଅଉ ଜଣେ ହାସପାତାଳରେ ମର ଯାଇଥିଲା । ଅଲ୍-ମୋରାରେ ଯେଉଁଳି ଭାବରେ ଆନ୍ଦୋଳନ ହୋଇ ଥାଉ ନା କାହିଁକି ସେଠି ଯେଉଁଳି ଅତ୍ୟାଚାର ହୋଇଥିଲା ତାର ବାସ୍ତବିକ ତୁଳନା ନାହିଁ । ଗାଁ ଗାଁରେ ପ୍ରତି ଘର ଲୁଟ୍‌ପାଟ୍ କରାଯାଇଥିଲା । କଂଗ୍ରେସ କର୍ମୀମାନଙ୍କର ସମସ୍ତ ସମ୍ପତ୍ତି ବାଜ଼ି ନିଲାମ କର ଦିଆ ଯାଇଥିଲା । ଗୋରା ସୈନ୍ୟମାନେ ଗାଁରେ ଶସ୍ୟକ୍ଷେତରେ ପଶି ଶସ୍ୟ କାଟି ଆଣିଥିଲେ । ଗୋଠାଏ ଗୋଠାଏ ଗାଁରୁ ସମସ୍ତ ଗୋରୁଗାଈଙ୍କୁ ଜବରଦସ୍ତି ନେଇ ଯାଉଥିଲେ । ଯୁବମାନଙ୍କର

ଅଭିଯୁକ୍ତମାନଙ୍କୁ ନିର୍ମମ ଭାବରେ କଷ୍ଟ ଦିଆ ହୋଇଥିଲା । ଅଲମୋରାରେ ୫୮୦୦୦୯ ସମୂହ ଜୋରିମାନା ଆଦାୟ କରା ଯାଇଛି । ଅପରାଧ ଭିତରେ ଏତିକି ଯେ ଛାତ୍ରମାନେ ଗୋଟାଏ ଫରକା କାଠ ଭାଙ୍ଗି ଦେଇ ଥିଲେ । ଏହି ଫରକାଟିକୁ ମରାମତି କରିବାପାଇଁ କର୍ତ୍ତୃପକ୍ଷ ୫୮୦୦୦୯ ଆଦାୟ କରିଥିଲେ ।

# ଐତିହାସିକ ଅଷ୍ଟିଚମୂର କାହାଣୀ

ମହାରାଷ୍ଟ୍ର କଂଗ୍ରେସ ନେତା ଶଙ୍କରରାଓ ଦେଓଙ୍କ ଭାଷାରେ କହିଲେ—ଅଷ୍ଟିଚମୂର ଭାରତରେ ଏକ ତୀର୍ଥ ସ୍ଥାନରେ ପରିଣତ ହୋଇଛି । ଗତ ଅଗଷ୍ଟ ବିପ୍ଳବରେ ଭାରତର ଯେଉଁ ଯେଉଁ ସ୍ଥାନରେ ସ୍ୱାଧୀନତା ସଂଗ୍ରାମ ସଫଳତା ସହ କିଛି ଦିନ ପାଇଁ ହେଲେ ମଧ୍ୟ ଚାଲିଥିଲା ଏବଂ ଜନସାଧାରଣ ଅମଲାତନ୍ତ୍ର ଶାସନକୁ ଅଚଳ କରି ସ୍ୱାଧୀନ ସରକାର ପ୍ରତିଷ୍ଠା କରି ପାରିଥିଲେ ଓ ପରେ ଗୋରା ସୈନ୍ୟ ଫଉଜଙ୍କର ଅମାନୁଷିକ ଅତ୍ୟାଚାରର ସମ୍ମୁଖୀନ ହୋଇ ଥିଲେ ମଧ୍ୟ ପ୍ରଦେଶର ଐତିହାସିକ ଅଷ୍ଟି-ଚମୂର ସେମାନଙ୍କ ଭିତରେ ଶୀର୍ଷ ସ୍ଥାନ ଅଧିକାର କରିଛି । ମହାତ୍ମା ଗାନ୍ଧୀଙ୍କର ଜଣେ ଶିଷ୍ଟ ଶିଷ୍ୟ ଅଧ୍ୟାପକ ଭାନସାଲି ଅଷ୍ଟିଚମୂର ଅତ୍ୟାଚାରକୁ ଜନସାଧାରଣଙ୍କ ଦୃଷ୍ଟିକୁ ଆଣିବା ପାଇଁ ୬୩ ଦିନ କାଳ ଅନଶନ କରିଥିଲେ । ଅଧ୍ୟାପକ ଭାନସାଲିଙ୍କ ଅନଶନରେ ସମସ୍ତ ଭାରତରେ ଜନସାଧାରଣ ତଥା ଭାରତ ସରକାର ବିଚଳିତ ହୋଇ ପଡ଼ିଥିଲେ । ଭାରତର ଖୁବ୍ କମ୍ ଘଟଣା ବୋଧହୁଏ ଏଭଳି ଚାଞ୍ଚଲ୍ୟ ସୃଷ୍ଟି କରିଥିବ । ଅଧ୍ୟାପକ ଭାନସାଲିଙ୍କର ଅନଶନର କାରଣ ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିବାକୁ ସରକାର ନିଷେଧ

କରି ଦେବାକୁ ନିଖିଳ ଭାରତ ସମ୍ବାଦପତ୍ର ସଂପାଦକ ସମ୍ମିଳନୀ ଦିନକ ପାଇଁ ସମଗ୍ର ଭାରତରେ ସମ୍ବାଦପତ୍ରମାନଙ୍କୁ ପ୍ରତିବାଦ ସ୍ୱରୂପ ବନ୍ଦ କରିଦେବାକୁ ନିର୍ଦ୍ଦେଶ ଦେଇଥିଲେ । କେତୋଟି ସାପ୍ତାହିକ ଖବରକାଗଜକୁ ବାଦ୍ ଦେଇ ପ୍ରାୟ ସମସ୍ତ ଦୈନିକ ସମ୍ବାଦପତ୍ର ଉକ୍ତ ନିର୍ଦ୍ଦେଶକୁ ମାନି ନିଜ ନିଜ ସମ୍ବାଦପତ୍ରକୁ ବନ୍ଦ କରିଥିଲେ । ଏହା ଫଳରେ ଘୋର ଶୃଙ୍ଖଳା ଖେଳି ଯାଇଥିଲା ଏବଂ ଶେଷରେ ସରକାର ଅଧ୍ୟାପକ ଭାନସାଲିଙ୍କ ଅନଶନର କାରଣ ପ୍ରକାଶ କରିଥିଲେ । ଅଧ୍ୟାପକ ଭାନସାଲି କହିବା ମତେ ଡାଃ ମୁଞ୍ଜେ ଓ ଶ୍ରୀଯୁକ୍ତ ଘାଟେ ବ୍ୟକ୍ତିଗତ ଭାବରେ ଅଷ୍ଟିଚମୂର ଘଟଣା ତଦନ୍ତ କରିବାକୁ ଯାଇଥିଲେ ଓ ଏକ ରିପୋର୍ଟ ପ୍ରକାଶ କରିଥିଲେ । ଏହି ରିପୋର୍ଟରେ ଯେଉଁସବୁ ବିବରଣୀ ପ୍ରକାଶ ପାଇଛି ସରକାର ଏ ପର୍ଯ୍ୟନ୍ତ ସେ ସବୁ ବିବରଣୀର ପ୍ରତିବାଦ କରିନାହାନ୍ତି । ଏହି ରିପୋର୍ଟ ମଧ୍ୟ ଏହା ପୂର୍ବରୁ କେବେହେଲେ ସାଧାରଣରେ ପ୍ରକାଶ ପାଇ ନ ଥିଲା । ଏହା ପ୍ରଥମେ ବମ୍ବେର 'ଫ୍ରି ପ୍ରେସଜର୍ଣ୍ଣାଲ୍' ପତ୍ରିକାର ସେପ୍‌ଟେମ୍ବର ତା ୨୪ ରିଖରେ ପ୍ରକାଶ ପାଇଲା । ଡାଃ ମୁଞ୍ଜେ ଓ ଶ୍ରୀଯୁକ୍ତ ଘାଟେ ଅଗଷ୍ଟ ୧୯ ତାରିଖରେ ଚିମୂର ପରିଦର୍ଶନ କରିଥିଲେ । ସେମାନେ ଲେଖିଛନ୍ତି ଯେ ପ୍ରଥମେ ସେପ୍‌ଟେମ୍ବର ତା ୧୯ ରିଖରେ ୱାର-ଟେକଠାରୁ ସେମାନଙ୍କ ଗସ୍ତ ଆରମ୍ଭ ହେଲା । ନାଗପୁରର ଡେପୁଟି କମିଶନର ସେମାନଙ୍କ ସଙ୍ଗେ ଯାଇଥିଲେ । ସେମାନେ ପ୍ରଥମେ ୱାରଟେକର ରେଲୱାଇ ଷ୍ଟେସନକୁ ଯାଇଥିଲେ । ଏହି ଷ୍ଟେସନଟି ଅନେକ ପରିମାଣରେ କ୍ଷତିଗ୍ରସ୍ତ ହୋଇଥିଲା । ଷ୍ଟେସନ ମାଷ୍ଟର ଓ ସରକାରୀ ଷ୍ଟେସନମାଷ୍ଟରଙ୍କ ଠାରୁ ସେମାନେ ଶୁଣିଲେ ଯେ ଦିନେ ୫୦୦ ହିନ୍ଦୁ ଓ ମୁସଲମାନ ଏକାଠି

ହୋଇ ଅସି ନବଟବେଣୀ ଗଣିର ଶମିକ ଓ ରେଲବାଇ କୁଲିଙ୍କ ସାହାଯ୍ୟରେ ଷ୍ଟେସନ ଉପରେ ଅକ୍ରମଣ କରିଥିଲେ । ଷ୍ଟେସନ ଗୃହପଟ୍ଟୁ ଅକ୍ରମଣ କରି ସେମାନେ ପ୍ରଥମେ ଟେଲିଗ୍ରାଫ ତାର କାଟି ଦେଇଥିଲେ । ତା ପରେ ସେମାନେ ବୁକିଂ ଅଫିସରେ ପଶି ସେଠାରେ ଥିବା ପ୍ରତ୍ୟେକ ଜିନିଷକୁ ଇବତ କରି ଦେଇଥିଲେ । ଏହା ଭିତରେ ଦଳେ ଲୋକ ଲମ୍ପ ରୁମ୍‌ରେ ପଶିଯାଇ କିରାସିନି ଟିଣ ସେଠୁ ନେଇ ଯାଇ ଷ୍ଟେସନ କୋଠାକୁ ପୋଡ଼ି ପକାଇ ଥିଲେ । ଅପରପଟେ ଅନ୍ୟ ଦଳେ ଲୋକ ରେଲ ପାହ୍ୟାକୁ ଉଠାଇ ଦେବାରେ ଲାଗିପଡ଼ିଥିଲେ । ଏହି ସମୟରେ ନାଗପୁରରୁ ଗୋଟାଏ ଗାଡ଼ି ଅସିଲା । ସିଗ୍‌ନାଲ ନ ପାଇ ଗାଡ଼ିଟି ପ୍ଲାଟଫର୍ମକୁ ଅସ୍ତେ ଅସ୍ତେ ଅସିଥିଲା । ସାଙ୍ଗେ ସାଙ୍ଗେ ଟ୍ରେନରୁ ଯାତ୍ରୀମାନଙ୍କୁ ଓହ୍ଲାଇ ପକାଇ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଡ଼ବାରେ ନିଆଁ ଲଗାଇ ଦିଆ ହୋଇଥିଲା । ଏହାଛଡ଼ା ଷ୍ଟେସନରେ ଅଉ ଦୁଇଟି ଉଲ୍ଲେଖ ଯୋଗ୍ୟ ଘଟଣା ଘଟିଥିଲା । ଗଣ ଅନ୍ଦୋଳନ ଅରମ୍ଭ କରିବା ପାଇଁ କର୍ମପନ୍ଥା ସ୍ଥିର କରିବାକୁ ବୃନ୍ଦାବନ ଯେଉଁ ସଭା ହୋଇ ଥିଲା ସେହି ସଭାର କେତେ ଜଣଙ୍କୁ ଗିରଫ କରି ଜଣେ ପୋଲିସ ସବ୍ ଇନ୍‌ସ୍ପେକ୍ଟର ସେମାନଙ୍କୁ ନେଇ ଷ୍ଟେସନକୁ ଅସିଥିଲେ । ସଙ୍ଗେ ସଙ୍ଗେ ସେଠାରେ ଜମା ହୋଇଥିବା ଜନତା ସେହି ବନ୍ଦୀମାନଙ୍କୁ ଖଲାସ କରି ଦେଇ ସବ୍‌ଇନ୍‌ସପେକ୍ଟରଙ୍କୁ ବନ୍ଦୀ କରି ନେଇ ଥିଲେ । ଠିକ୍ ସେହି ସମୟରେ ଅଉ ଜଣେ ସବ୍ ଇନ୍‌ସ-ପେକ୍ଟର ନାଗପୁରରୁ ଅସି ପହଞ୍ଚିଲେ ଏବଂ ତାଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ଗିରଫ କରିନିଆ ହେଲା । ଏହି ଦୁଇଜଣ ସବ୍‌ଇନ୍‌ସପେ-କ୍ଟରଙ୍କ ସରକାରୀ ପୋଷାକ ଛଡ଼ାଇ ନିଆ ହୋଇ ସେମାନଙ୍କୁ ଗାନ୍ଧୀ ଟୋପି ପିନ୍ଧାଇ ଦିଆ ହୋଇଥିଲା । ତାପରେ ସେଠାରେ

ଜମା ହୋଇଥିବା ଜନତା ଏକ ଶୋଭାଯାତ୍ରାରେ ସେ ଦୁଇ ଜଣ ସବ୍‌ଇନ୍‌ସପେକ୍‌ଟରଙ୍କ ହାତରେ ଜାତୀୟ ପତାକା ଧରାଇ ଆଗେ ଚଳାଇ ସହର ଅଡ଼କୁ ଯାତ୍ରା କରିଥିଲେ । ଏହି ଶୋଭାଯାତ୍ରା ଯେତେବେଳେ ପୋଲିସ ଷ୍ଟେସନ ଓ ତହସିଲ ଅଫିସରେ ପହଞ୍ଚିଲା ସେତେବେଳେ ଅଜ ଏକ ଶୋଭାଯାତ୍ରା ସେମାନଙ୍କ ସଙ୍ଗେ ଆସି ଯୋଗ ଦେଇଥିଲା । ଏହି ସବୁ ଶୋଭାଯାତ୍ରାରେ ହିନ୍ଦୁ ଓ ମୁସଲମାନ ଉଭୟେ ଯୋଗ ଦେଇଥିଲେ ବୋଲି ସରକାରୀ ଅଫିସରମାନେ ନିଜେ ସ୍ୱୀକାର କରିଛନ୍ତି । ଯାହାହେଉ ଲୋକମାନେ ଷ୍ଟେସନ କର୍ମଚାରୀ ଓ ସେହି ଦୁଇଜଣ ସବ୍‌-ଇନ୍‌ସପେକ୍‌ଟରଙ୍କର ବ୍ୟକ୍ତିଗତ ଭାବରେ କୌଣସି କ୍ଷତି କରି ନ ଥିଲେ । କଚେରୀ କୋଠାକୁ ପୂରାପୂରି ପୋଡ଼ି ଧ୍ୱଂସ ହୋଇଥିଲା ଓ ଖଜଣାଖାନାକୁ ଲୁଟି କରି ନିଆ ହୋଇଥିଲା । ପୋଲିସ ଷ୍ଟେସନ ପୋଡ଼ି ଦେଲା ବେଳେ ଜନତାଙ୍କ ଉପରେ ପୋଲିସ ପକ୍ଷରୁ ଆକ୍ରମଣ ହୋଇ ନ ଥିଲା ବୋଲି 'ପ୍ରକାଶ ପାଇଛି ।

ତା ପରେ ସେମାନେ ଦେଖିଲେ ଯେ ପୋଷ୍ଟଅଫିସ ପୋଡ଼ି ଭସ୍ମରେ ପରିଣତ ହୋଇଛି । ଉମ୍ମେଲ ସରାଇ ଗ୍ରାମରେ ପହଞ୍ଚିବା କ୍ଷଣି ଆଖ ପାଖ ଗ୍ରାମବାସୀମାନେ ସେମାନଙ୍କ ନିକଟକୁ ଆସିଥିଲେ । ସ୍ଥାନୀୟ ପ୍ରଧାନ ପଣ୍ଡାମାନଙ୍କ ପଚାରି ସେମାନେ ବୁଝିଲେ ଯେ ଗ୍ରାମଟେକଠାରେ ରହିଥିବା ମାହାର ସୈନ୍ୟ-ବାହିନୀର କେତେକ ସୈନ୍ୟ ଦୁଇଦିନ ତଳେ ଉମ୍ମେଲ ଗ୍ରାମରେ ଜବରଦସ୍ତି ଲୋକଙ୍କ ଘରେ ପଶି ଟଙ୍କା ପଇସା ଓ ଅନ୍ୟ ଯାହା ପାଇଲେ ସବୁ ଲୁଟ୍ ପାଟ୍ କରି ନେଇ ଆସିଥିଲେ ଏବଂ ଲୋକେ ତାଙ୍କୁ ବାଧା ଦେବାରେ ଓ ପ୍ରତିରୋଧ କରିବାରେ ସେମାନେ

ଘର ଭିତରେ ଥିବା ଠାକୁରଙ୍କୁ ଅପବିତ୍ର କରି ବାସନ କୁସନକୁ ଏଣେ ତେଣେ ଫୋପାଡ଼ି ଦେଇଥିଲେ, କେତେକଙ୍କୁ ଠେଙ୍ଗାରେ ମାଡ଼ ଦେଇଥିଲେ । ଜଣେ ଲୋକର ଘରର ସେମାନେ ଦ୍ୱାର ଭାଙ୍ଗି ସେଫେଇ ଘର ସେଚ୍ଛା ଘା କରି ପକାଇଥିଲେ ଓ ବାକ୍ସ ଭାଙ୍ଗି ଟ ୧୧୦୦ ଙ୍କା ନେଇ ଚାଲି ଯାଇଥିଲେ । ସେମାନଙ୍କଠାରୁ ପ୍ରକାଶ ଯେ କେତେକ ମରହଟ୍ଟା ସୈନ୍ୟ ପ୍ରଧାନ ମନ୍ଦିର ଭିତରେ ପଶିଥିଲେ ମଧ୍ୟ ମନ୍ଦିରର କମ୍ବା ଠାକୁରଙ୍କର କୌଣସି କ୍ଷତି କରି ନ ଥିଲେ ।

ସେପ୍ଟେମ୍ବର ୨୨ତାରିଖରେ ସେମାନେ ଅସ୍ତି ଅଞ୍ଚଳରେ ଯାଏ। ଇଲେ । ଅସ୍ତିକୁ ଯିବା ରାସ୍ତାରେ ଥିବା ଗୋଟିଏ ପୋଲକୁ ଭାଙ୍ଗି ଦିଆ ହୋଇଥିଲା । ଅସ୍ତି ଭିତରକୁ ଯେପରି କୌଣସି ମଟର ଲରି ବା କାର ଯାଇ ନ ପାରିବ ସେହି ଉଦ୍ଦେଶ୍ୟରେ ଏହା କରାଯାଇଥିଲା । ଅଉ ମଧ୍ୟ ମଟର ରାସ୍ତାରେ ସେ ଭଳି ଚାଲି ନ ପାରିବ ସେଥିପାଇଁ ବଡ଼ ବଡ଼ ଗଛ କାଟି ରାସ୍ତାରେ ପକାଇ ଦିଆ ହୋଇଥିଲା । ପୋଲିସ ଷ୍ଟେସନକୁ ପୋଡ଼ିଦିଆ ହୋଇ ଥିଲା । ଅଫିସରଙ୍କୁ ଯେଉଁଠି ମାରି ପୋଡ଼ି ଦିଆ ହୋଇଥିଲା ଓ ଯେଉଁଠି ହିନ୍ଦୁ ଓ ମୁସଲମାନ ଜନତାଙ୍କୁ ଗୁଳିମାରି ଜଣେ ମୁସଲମାନଙ୍କୁ ମାରି ପକା ହୋଇ ଥିଲା ସେହି ସବୁ ସ୍ଥାନ ସେମାନେ ଦେଖି-ଥିଲେ । ସେପ୍ଟେମ୍ବର ୨୬ତାରିଖରେ ସେମାନେ ଶନୂରରେ ପହଞ୍ଚିଲେ । ଶନୂର ହତ୍ୟାକାଣ୍ଡ ପୂର୍ବରୁ ଶନୂରର ତିନି ମାଇଲ ଦୂରରେ ଥିବା ପୋଲଟିକୁ ଭାଙ୍ଗି ଦିଆ ହୋଇଥିଲା । ଅଉମଧ୍ୟ ଶନୂରକୁ ଯିବା ରାସ୍ତାରେ ମଟର ଯେପରି ଯାଇ ନ ପାରିବ ସେଥିପାଇଁ ଗଛସବୁ କାଟି ଗଦା କରି ଦିଆ ଯାଇଥିଲା । ସର୍କଲ ସବଇନ୍ସପେକ୍ଟର ଓ ଜଣେ କନଷ୍ଟେବଲକୁ ଯେଉଁଠାରେ

ହତ୍ୟାକରି ଯାଇ ଥିଲେ ସେମାନେ ସେ ସ୍ଥାନ ବୁଲି ଦେଖିଥିଲେ । ତା ପରେ ଡ଼ାକ ବଙ୍ଗଳାକୁ ପୋଡ଼ି ଦିଆ ହୋଇଥିବାର ସେମାନେ ଦେଖିଲେ ଏବଂ ସେହିଠାରେ ସବ୍‌ଡ଼ିଭିଜନାଲ ଅଫିସର ଓ ନାଏବ ତହସିଲଦାର ଉପରି ମଲେ ସେ ସମ୍ପର୍କରେ ଜଣେ ଚୌକିଦାରଠାରୁ ଶୁଣିଥିଲେ । ଚିମୁର ସହରକୁ ଯାଇ ସେମାନେ ଦେଖିଲେ ଯେ ପୋଲିସ ଷ୍ଟେସନ୍ ଆଂଶିକ ଭାବରେ ପୋଡ଼ିଦିଆ ହୋଇଛି । ଏହିଠାରେ ଯେଉଁ ୧୩୦ ଜଣ ଲୋକଙ୍କୁ ଗିରଫ କରି ଯାଇଥିଲା ସେମାନଙ୍କୁ ୩୪ଟା ରୁମ୍‌ରେ ମାଡ଼ମୁଣ୍ଡ ଭର୍ତ୍ତି କରି ଦିଆ ହୋଇ ଥିଲା । ସେମାନଙ୍କ ଭିତରୁ କେତେକଙ୍କୁ ଗୋଟିଏ ଗୁହାଳରେ ମଧ୍ୟ ରଖି ଦିଆ ହୋଇଥିଲା । ଏହି ଗୁହାଳର ଛାତ ନ ଥିଲା, ପୁଣି ସେତେବେଳେ ଅନବରତ ବର୍ଷା ହେଉଥିଲା । ଡେପୁଟି କମିସନର ନିଜେ ମାନିଲେ ଯେ ଅନ୍ୟ ଘର ନ ଥିବାରୁ ଅଳ୍ପ କେତୋଟି ଘରେ ସେମାନଙ୍କୁ ରଖିଦିଆ ହୋଇ ଥିଲା । ଏହି ଘଟଣାରେ ଡ଼ାଃ ମୁଞ୍ଜେ ଓ ଶ୍ରୀଯୁକ୍ତ ଘାଟେ ମତ ପ୍ରକାଶ କରିଛନ୍ତି ଯେ ଏହା ଅନ୍ଧକୂପ ହତ୍ୟାର ବ୍ୟବସ୍ଥା ଛଡ଼ା ଆଉ କିଛି ନୁହେଁ । ତା ପରେ ଚିମୁର ସହର ଚାରିପଟେ ବୁଲିଥିଲେ ଓ ଶେଷରେ ଶ୍ରୀଯୁକ୍ତ ବାଙ୍କ ଘରେ ପହଞ୍ଚିଥିଲେ । ସେମାନେ ତାଙ୍କ ବାରଣ୍ଡାରେ ବସି ଚିମୁର ଅତ୍ୟାଚାରର ଏକ ପୂରାପୂରି କାହାଣୀ ବର୍ଣ୍ଣନା କରିବା ପାଇଁ ଶ୍ରୀମତୀ ବାଙ୍କୁ ଅନୁରୋଧ କରିଥିଲେ । ଅନେକ ସମୟ ପ୍ରବର୍ତ୍ତାଇବା ପରେ ସେ ରାଜି ହୋଇଥିଲେ ଓ ସାହାର ଅନ୍ୟାନ୍ୟ ଅନେକ ସ୍ତ୍ରୀ ଲୋକଙ୍କୁ ମଧ୍ୟ ଡାକି ଆଣିଥିଲେ । ଏହି ସ୍ତ୍ରୀ ଲୋକମାନେ ଅତ୍ୟନ୍ତ ଲଜ୍ଜା ଓ ଅପମାନରେ ସେମାନଙ୍କ ଉପରେ ହୋଇଥିବା ପାଶବିକ ଅତ୍ୟାଚାରର କାହାଣୀ ବର୍ଣ୍ଣନା କରିଥିଲେ । ମୋଟରେ ୧୨ଜଣ

ସ୍ତ୍ରୀ ଲୋକ ଏହି କାହାଣୀ ବର୍ଣ୍ଣନା କରିଥିଲେ ଏବଂ ସେଥି ଭିତରୁ ୧୩ ଜଣଙ୍କ ଉପରେ ପ୍ରକୃତରେ ଅତ୍ୟାଚାର କରା ଯାଇଥିଲା । କେତେକ ସ୍ତ୍ରୀ ଲୋକଙ୍କ ଉପରେ ଏକାଧିକ ଗୋରା ସୈନ୍ୟ ଅତ୍ୟାଚାର କରିଥିଲେ । ଏହି ସ୍ତ୍ରୀ ଲୋକମାନେ ଯନ୍ତ୍ରଣାପୂର୍ଣ୍ଣ ହୃଦୟରେ ପ୍ରକାଶ କରିଥିଲେ ଯେ ସେମାନଙ୍କ ପୁରୁଷମାନେ ଏହି ସବୁ ଅତ୍ୟାଚାରର ଅବଶ୍ୟ ପ୍ରତିଶୋଧ ନେବେ । ଡେପୁଟି କମିଶନରଙ୍କ ଉପସ୍ଥିତ ଥିବା ବେଳେ ଶ୍ରୀମତୀ ବାଜା ଏକ ଘଟଣା ବର୍ଣ୍ଣନା କରି କହିଥିଲେ ଯେ ଗୋରା ସୈନ୍ୟମାନେ ଦଳକୁ ଦଳ ଦିନ ରାତି ସବୁ ବେଳେ ତାଙ୍କ ଘରେ ପଶି ଯାଉ ଥିବାରୁ ସେ ନିତାନ୍ତ ବ୍ୟତିବ୍ୟସ୍ତ ହୋଇ ଶେଷରେ ସାହସ କରି ଏକା ଏକା ଘରୁ ଯାଇ ନିଜେ ଡେପୁଟି କମିଶନରଙ୍କ ଆଗରେ ଏ ସବୁ ଘଟଣା ବର୍ଣ୍ଣନା କରିଥିଲେ । ଡେପୁଟି କମିଶନର ତାଙ୍କୁ ଓଲଟି କହିଲେ ଯେ ତୁମର ସ୍ୱାମୀ ଓ ଭାଇମାନେ ଏହା କରିଛନ୍ତି ଓ ସେମାନେ ଏଥିପାଇଁ ଦାୟୀ । ଯାହା ହେଉ ଶେଷରେ ସେ ସୈନ୍ୟମାନଙ୍କୁ ଫେରାଇ ଦେବାକୁ ଆଦେଶ ଦେଲେ । ଏହି ଯେଉଁ ସ୍ତ୍ରୀ ଲୋକଙ୍କ ଉପରେ ଅତ୍ୟାଚାର କରାଯାଇଥିଲା ସେମାନଙ୍କ ଭିତରୁ ନାଏକ ପରିବାର ଗୋଟିଏ ଝିଅ ଉପରେ ଜଣେ ଗୋରା ସୈନ୍ୟ ଓ ଜଣେ କନେଷ୍ଟବଲ ପାଶବିକ ଅତ୍ୟାଚାର କରି ସାରି ତାଠାରୁ ଗୋଟିଏ ସୁନାମୁଦି ଛଡ଼େଇ ନେଇ ଥିଲେ । ସେହି ଝିଅଟିର ମା ବୁଢ଼ୀକୁ ଆଉ ଗୋଟାଏ ଘରକୁ ନେଇ ଯାଇ ଥିଲେ । ସେହି ବୁଢ଼ୀଠୁଁ ମଧ୍ୟ ୨୦୯ ସେମାନେ ଅଦାୟ କରିଥିଲେ । ନିତାନ୍ତ ଅସହାୟ ଅବସ୍ଥାରେ ସେହି ବୁଢ଼ୀଟି ତା ଝିଅ ଉପରେ ହେଉଥିବା ଅତ୍ୟାଚାର ସହ୍ୟ କରିଥିଲା । ଆଉ ସେହି ଗାଁ ପଞ୍ଚାଏତର ପ୍ରେସିଡ଼େଣ୍ଟଙ୍କ ସ୍ତ୍ରୀ ଗର୍ଭବତୀ ଥିବା ଅବସ୍ଥାରେ ତା

ଉପରେ ଅତ୍ୟାଚାର କରାଯାଇଥିଲା । ଏହି ସବୁ ପାଶବିକ ଅତ୍ୟାଚାର ଛଡ଼ା ଯେଉଁ ଲୁଟ ତରାଜ ଓ ଘରର ଆସବାବପତ୍ର, ବାକ୍ସ, ଗହଣା, ବାସନ କୁସନ ଓ ଖାଦ୍ୟ ଜିନିଷ ସେମାନେ ନଷ୍ଟ କରି ଦେଇଛନ୍ତି ତାହା ହିସାବ କରିବା ଏକାବେଳକେ ଅସମ୍ଭବ । ଏହି ସବୁ ଘର ଯେ ଭଳି ଭାଙ୍ଗି ତୁଟି ନଷ୍ଟ କରି ଦିଆ ହୋଇଛି ସେ ଦୃଶ୍ୟ ବାସ୍ତବିକ୍ ହୃଦୟ ବିଦାରକ । ଲୋକେ ଯେଉଁ ୧୦୧୯୨ଟି ଧନୀ ଓ ସଙ୍ଗତିସମ୍ପନ୍ନ ପରିବାରଙ୍କ ତାଲିକା ସେମାନଙ୍କୁ ଦେଲେ ସେଁମାନଙ୍କ ଘରେ ପଶି ସୈନ୍ୟମାନେ ବହୁତ ଜିନିଷ ମନଇଚ୍ଛା ଭାଙ୍ଗି ତୁଟି ନଷ୍ଟ କରି ଦେଇ ଯାଇଛନ୍ତି । ନିଜେ କମିଶନର ଓ ଡେପୁଟି କମିଶନର ତାଙ୍କ ସଙ୍ଗେ ଥାଇ ଏ ସବୁ ଦେଖିଛନ୍ତି ଓ ଶୁଣିଛନ୍ତି । ପୋଲିସ ଷ୍ଟେସନ ଗୁଣ୍ଟରେ ଥିବା ଜଣେ ପୋଲିସ କନଷ୍ଟେବଲ ସ୍ୱୀକାର କଲେ ଯେ ସଭା ଓ ଶୋଭାଯାତ୍ରା ଗୁଡିକ ହିନ୍ଦୁ ଓ ମୁସଲମାନ ମିଶି କରିଥିଲେ । ଏହି ସଭା ମାନଙ୍କରେ ସ୍କୁଲର ଶିକ୍ଷକ ଓ କଂଗ୍ରେସ ନେତାମାନେ ବକ୍ତୃତା ଦେଉଥିଲେ । ସେମାନେ ଉତ୍ତେଜିତ ହେବା ବେଳେ ଗୋଟିଏ ଡେଲି କାଢ଼ର ସ୍ତ୍ରୀଲୋକ ଘରକୁ ଯାଇଥିଲେ । ସେହି ସ୍ତ୍ରୀ ଲୋକଟି ରୋଗ ଶଯ୍ୟାରେ ପଡ଼ିଥିଲା । ଅଳ୍ପ କେତେ ଦିନ ତଳେ ସେ ପ୍ରସବ କରିଥାଏ । ତା ଶାଶୁ ତା ରୋଗ ଶଯ୍ୟା ନିକଟରେ ବସିଥିଲା । ସେହି ସ୍ତ୍ରୀ ଲୋକଟି ଗର୍ଭବତୀ ହୋଇ ଥିଲେ ମଧ୍ୟ ଜଣେ ପୋଲିସ କନଷ୍ଟେବଲ କିପରି ତା ଉପରେ ପାଶବିକ ଅତ୍ୟାଚାର କରିଥିଲା ତାହା ସେ ଅତ୍ୟନ୍ତ ଦୁଃଖ ଓ ଲଜ୍ଜାରେ ବର୍ଣ୍ଣନା କରିଥିଲା । ତାପରେ ସେମାନେ ନାଏକ ପରିବାରର ଭେଟେରଙ୍କ ଘରକୁ ଯାଇ ସେଠି କିପରି ଜିନିଷ ପତ୍ରକୁ ଭାଙ୍ଗି ତୁଟି ଧ୍ୱଂସ କରି ଦିଆ ହୋଇଛି ତା ନିଜ ଆଖିରେ ଦେଖିଥିଲେ ।

ସେମାନେ ଯେଉଁ ଯେଉଁ ସ୍ଥାନରେ ରହୁଥିଲେ ସେହି ଆଖ ପାଖ ଗାଁର ଲୋକମାନେ ଦଳ ଦଳ ହୋଇ ଆସି ସେମାନଙ୍କଠାରୁ କି ଭଳି ଅତ୍ୟାଚାର କରିବାର ସମୂହ ଜୋରିମାନା ଅଦାୟ ହୋଇଛି ତାହା ବର୍ଣ୍ଣନା କରିଥିଲେ । ଏମିତକି ସ୍ତ୍ରୀ ଲୋକମାନେ ମଧ୍ୟ ଆସି ପୋଲିସଙ୍କ ଅତ୍ୟାଚାର ଓ ଜବରଦସ୍ତ ଉପାୟରେ ସମୂହ ଜୋରିମାନା ଅଦାୟ କଥା କହୁଥିଲେ । ଏହି ସବୁ ସ୍ଥାନରେ ଯେଉଁ ଦୁର୍ଘଟଣା ଘଟିଲା ତାର ଅଳ୍ପ ସମୟ ପରେ ପରିବାରମାନଙ୍କରୁ ପୁରୁଷମାନଙ୍କୁ ପୋଲିସ ଗିରଫ କରି ନେଇ ଥାନାରେ ବନ୍ଦ କରି ରଖି ଦେଲେ ଏବଂ ଯାହା ସେମାନେ କେବେହେଲେ ଦିନେ ସ୍ୱପ୍ନରେ ଭାବି ନ ଥିଲେ ସେହି ଭଳି ନିଷ୍ଠୁର ଅକଥନୀୟ ଅତ୍ୟାଚାର କରିସାରିବା ପରେ ପରେ ପୋଲିସଙ୍କୁ ଦଳ ଦଳ କରି ପଠାଇ ଏହି ସବୁ ସ୍ତ୍ରୀ ଲୋକଙ୍କୁ ଧମକାଇ ଓ ଜବରଦସ୍ତ କରି ସେମାନଙ୍କଠାରୁ ସମୂହ ଜୋରିମାନା ଅଦାୟ କରିଥିଲେ । ଏହି ଜୋରିମାନା ଅଦାୟରେ କିପରି ସାମ୍ପ୍ରଦାୟିକ ଭେଦ ଭାବକୁ ଜାଣି ଶୁଣି ତେଜେଇ ଦିଆ ହୋଇଥିଲା ତାର କେତେକ କାହାଣୀ ସେମାନେ ଶୁଣିଥିଲେ । ଚିମୁରର ଜଣେ ମୁସଲମାନ ବଣିକଙ୍କୁ କୁହା ହୋଇଥିଲା ଯେ ସେ ଅଭାବରେ ପଡିଥିବା ହିନ୍ଦୁଙ୍କଠାରୁ ସୁନା ଗହଣା ନେଇ ସେମାନଙ୍କୁ ଟଙ୍କା ଦିଅନ୍ତୁ । ଆଉ ହିନ୍ଦୁ ଓ ମୁସଲମାନମାନେ ଏକାଠି ମିଶି ସବୁ କରିଥିଲେ ମଧ୍ୟ ସାମ୍ପ୍ରଦାୟିକ ଭେଦଭାବ ବଢ଼ାଇବା ପାଇଁ କେବଳ ହିନ୍ଦୁଙ୍କଠାରୁ ସମୂହ ଜୋରିମାନା ଅଦାୟ କରାଯାଇଥିଲା ।

ମଧ୍ୟ ପ୍ରଦେଶର ଅଷ୍ଟି ଚିମୁର ଭାରତର ଜାତୀୟ ତୀର୍ଥ କ୍ଷେତ୍ର ଓ ବ୍ରିଟିଶ ଅମଲ ତନ୍ତ୍ର ଶାସନର ଏକ ଘୃଣ୍ୟ କଳଙ୍କ ହୋଇ

ଚିର ଦିନ ରହିବ । ବ୍ରିଟିଶ ସରକାର ଭାରତରୁ ବିଦାୟ ନେଲେ ମଧ୍ୟ ଲୋକେ ଏହି ଅଷ୍ଟି ଚିମୁରର ଅତ୍ୟାଚାର କାହାଣୀ ମନେ ପକାଇ ସରକାରକୁ ଚିରଦିନ ଘୃଣା କରୁଥିବେ । ଅଷ୍ଟି ଓ ଚିମୁରରେ ଯେଉଁ ସବୁ ଅତ୍ୟାଚାର ଜବରଦସ୍ତି ଓ ଦମନ ଲୀଳା ଚାଲିଥିଲା ତାହା ଶେଷ ହେବା ପରେ ସେଠାରେ ଯେଉଁ କେତେକ ସରକାରୀ ଅଫିସରଙ୍କୁ ହତ୍ୟା କରିଥିବାର ଅଭି-ଯୋଗରେ ୪୭ ଜଣଙ୍କୁ ଗିରଫ କରାଯାଇ ସେମାନଙ୍କ ନାମରେ ଦୁଇଟି କୋର୍ଟରେ ବିଚାର ଚାଲିଲା ଏହି ବିଚାର ସମଗ୍ର ଭାରତରେ ଏକ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ୧୯୪୨ ନଭେମ୍ବର ୧୨ ତାରିଖରେ ସ୍ପେଶାଲ ଜଜ ଏ ଦୁଇଟି ମକଦ୍ଦମାର ରାୟ ଦେଇ ୧୩ ଜଣଙ୍କୁ ପ୍ରାଣଦଣ୍ଡ ଦେବାର ଆଦେଶ ଓ ୨୬ ଜଣଙ୍କୁ ଯାବ-ଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ କରିଥିଲେ । ଦ୍ୱିତୀୟ ମକଦ୍ଦମାରେ ୧୬ଜଣଙ୍କୁ ଫାଶିଦଣ୍ଡ ଓ ୧୬ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆ ହୋଇ, ୫ଜଣ ଖଲାସ ହୋଇଥିଲେ । ତା ପରେ ହାଇକୋର୍ଟ ବିଚାରରେ ୮ଜଣ ଆସାମୀଙ୍କୁ ଫାଶି ଆଦେଶ ଓ ୭ଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଆଦେଶ ହେଲା । ଅଷ୍ଟି ଓ ଚିମୁର ମକଦ୍ଦମାର ଫାଶିଦଣ୍ଡ ପାଇଥିବା ୧୫ଜଣ ଆସାମୀଙ୍କୁ ରକ୍ଷା କରିବା ପାଇଁ ସମଗ୍ର ଭାରତରେ ପ୍ରବଳ ଆନ୍ଦୋଳନ ହୋଇଥିଲା ଏବଂ ଫଳରେ ମଧ୍ୟ ପ୍ରଦେଶର ଲାଟ ସେମାନଙ୍କ ଭିତରୁ ୮ଜଣଙ୍କର ପ୍ରାଣଦଣ୍ଡ ଆଦେଶ ରଦ୍ଦ କରି ଦେଇଥିଲେ । ତାପରେ ମହାତ୍ମାଗାନ୍ଧୀ ପ୍ରକାଶ୍ୟ ଭାବରେ ବଡ଼ଲାଟଙ୍କୁ ଏହି ଫାଶି ଦଣ୍ଡ ପାଇଥିବା ଆସାମୀମାନଙ୍କର ପ୍ରାଣରକ୍ଷା କରିବା ପାଇଁ ନିବେଦନ କରି ପତ୍ର ଦେଇଥିଲେ । ଏସବୁ ଆନ୍ଦୋଳନ ଫଳରେ ବଡ଼ଲାଟ ଅବଶିଷ୍ଟ ୭ଜଣଙ୍କ ଫାଶି ଆଦେଶ ରଦ୍ଦ କରି ଦେଇ ସେମାନଙ୍କର ପ୍ରାଣ ଦିଆ କରିଥିଲେ ।

ଅଷ୍ଟିଚିମୂର କାହାଣୀ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିଥିଲେ ମଧ୍ୟ ମଧ୍ୟ ପ୍ରଦେଶର ଅନ୍ୟାନ୍ୟ ଅନେକ ସ୍ଥାନରେ ଅଗଷ୍ଟ ମାସରେ ଓ ତାପରେ ଗଣ ଆନ୍ଦୋଳନ ଚାଲିଥିଲା । ମଧ୍ୟ ପ୍ରଦେଶର ଛାତ୍ର, କୃଷକ ଓ ଶ୍ରମିକ ଅଗଷ୍ଟ ବିପ୍ଳବରେ ସେମାନଙ୍କର ଦାନ ଦେଇ ଏହି ପ୍ରଦେଶକୁ ଧନ୍ୟ କରିଛନ୍ତି । ବମ୍ବେ ସହରର କଂଗ୍ରେସ ମଞ୍ଚ ଉପରେ "କର ବା ମର" ଧ୍ୱନି ଶୁଣିବାର ୪ ଦିନ ପରେ ସମଗ୍ର ମଧ୍ୟ ପ୍ରଦେଶବାସୀ ଏହି ଧ୍ୱନିକୁ ବାସ୍ତବରେ ପରିଣତ କରିଥିଲେ । ନାଗପୁରରେ ପ୍ରଥମେ ଆନ୍ଦୋଳନ ଆରମ୍ଭ ହେଲା । ନାଗ ପୁରରେ ପତାକା ଅଭିବାଦନ କରିବା ପାଇଁ ଆୟୋଜନ କରାଯାଇଥିବା ଏକ ସଭାରେ ପୋଲିସ ଉତ୍ୟକ୍ତ ହୋଇପଡ଼ି ଥିଲେ । ଏହିଠାରେ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ହେଲା ଏବଂ ତାହା ସମଗ୍ର ପ୍ରଦେଶର ଗ୍ରାମେ ଗ୍ରାମେ ବ୍ୟାପିଗଲା । ମଧ୍ୟ ପ୍ରଦେଶର ଜଣେ ବିଶିଷ୍ଟ କଂଗ୍ରେସ ନେତାଙ୍କ ଭାଷାରେ ନାଗପୁର ଭୋନସ୍ଲା ସାମ୍ରାଜ୍ୟର ରାଜଧାନୀ ରୂପେ ପରିଣତ ହୋଇଥିଲା । ମଧ୍ୟ ପ୍ରଦେଶର ଲାଟ ନିଜେ ସ୍ୱୀକାର କରିଛନ୍ତି ଯେ ନାଗପୁରବାସୀ ୭୨ ଘଣ୍ଟା କାଳ ନାଗପୁରକୁ ଶାସନ କରିଥିଲେ । ମଧ୍ୟ ପ୍ରଦେଶରେ ଶଙ୍କର ନାମକ ଅଠର ବର୍ଷର ଯେଉଁ ବାଳକ ହସି ହସି ପ୍ରଥମେ ଫାଶି ପାଇଥିଲା ସେ ଜଣେ ନାଗପୁରର ଅଧିବାସୀ ।

ଶେଷରେ ପଞ୍ଜାବୀ ଓ ମାନ୍ଦ୍ରାଜୀ ସୈନ୍ୟମାନେ ଅକଥନୀୟ ଅତ୍ୟାଚାର ଚଳେଇଥିଲେ । ଦୁଇଦିନ ପର୍ଯ୍ୟନ୍ତ ଲୋକେ ଘରେ କବାଟ କିଳି ରହିଥିଲେ । ଯିଏ ପଦାକୁ ବାହାରୁଥିଲା ତାକୁ ଗୁଳି କରି ମାରି ଦିଆ ହେଉଥିଲା । ଏହିଭଳି କେବଳ ଇତାଓ୍ୟାରରେ

ସହର ଭିତରୁ ସେହି ଦିନ ଭିତରେ ୨୦୦ଲୋକଙ୍କୁ ସୈନ୍ୟମାନେ ଗୁଳିକରି ମାରି ଦେଇଥିଲେ । ପ୍ରଥମେ ୧୨ ବର୍ଷର ଗୋଟିଏ ମୁସଲମାନ ପିଲା ପୋଲିସର ଗୁଳିରେ ଜୀବନ ଦେଇଥିଲା । ଗ୍ରାମଷ୍ଟେଚ, ଅଷ୍ଟି ଓ ଚିମୁରରେ ଅଗଷ୍ଟ ୧୪ ଓ ୧୬ ତାରିଖରେ ଆନ୍ଦୋଳନ ଚାଲିଥିଲା । ଚିମୁରରେ ପ୍ରଥମେ ଅଗଷ୍ଟ ତା ୧୬ ରିଖ ଦିନ ଆନ୍ଦୋଳନ ଆରମ୍ଭ ହେଲା ଓ ସବ୍‌ଡିଭିଜନାଲ ଅଫିସର ସର୍କଲ ଇନ୍‌ସ୍ପେକ୍ଟର ଓ ଜଣେ କନେଷ୍ଟବଲଙ୍କୁ ହତ୍ୟା କରି ପୋଡ଼ି ପକା ହୋଇଥିଲା । ଏଠାରେ କୌଣସି ସରକାରୀ ଚୋଠା ବାଡ଼ିର ସତ୍ତା ନ ଥିଲା । ଅଗଷ୍ଟ ତା ୧୯ ରିଖ ଦିନ ଏଠାରେ ୨୦୦ ଜଣ ବ୍ରିଟିଶ ସୈନ୍ୟ ଓ ୫୦ ଭାରତୀୟ ସୈନ୍ୟ ଆସି ପହଞ୍ଚିଲେ । ତା ପରେ ଦୁଇଦିନ ଧରି ଚିମୁରର ଜନସାଧାରଣ ସାମରିକ ଶାସନର ସମ୍ମୁଖୀନ ହେଲେ । ଏହି ଦୁଇଦିନ କାଳ ଚିମୁରର ଧନୀ, ଦରିଦ୍ର, ବଡ଼, ଛୋଟ, ସ୍ତ୍ରୀ, ପୁରୁଷ ସମସ୍ତେ ଆତଙ୍କ ଗ୍ରସ୍ତ ହୋଇ କବାଟ କିଳି ପଶିବାକୁ ବାଧ୍ୟ ହୋଇଥିଲେ । ଦିନରେ ପୁରୁଷମାନଙ୍କୁ ପ୍ରହାର କରାଯାଇଥିଲା ଓ ସ୍ତ୍ରୀ ଲୋକମାନଙ୍କ ଉପରେ ପାଶବିକ ଅତ୍ୟାଚାର କରାଯାଇଥିଲା । ୧୨୦ ଜଣଙ୍କୁ ଗିରଫ କରି ନିଆ ହୋଇଥିଲା ।

## ବିପ୍ଳବର ଜନ୍ମଭୂମି ବଙ୍ଗଳାରେ--
## ତମଲୁକ ଓ କାନ୍ଥିରେ ଜାତୀୟ ସରକାର

ବଙ୍ଗଳା କେବଳ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଜନ୍ମଭୂମି ନୁହେଁ, ଭାରତବର୍ଷରେ ପ୍ରଥମ ଜାତୀୟତା ଓ ବିପ୍ଳବର ମଧ୍ୟ ଜନ୍ମଭୂମି । ଭାରତବର୍ଷରୁ ବ୍ରିଟିଶ ରାଜତ୍ୱ ଲୋପ କରି ସ୍ୱାଧୀନତା

ପ୍ରତିଷ୍ଠା କରିବାକୁ ନିଜର ଜୀବନ ଦେବାକୁ ହୁଏ, ଚରମ ତ୍ୟାଗ କରିବାକୁ ଓ ଦୁଃଖ ବରଣ କରିବାକୁ ହୁଏ ବଙ୍ଗବାସୀ ଯୁବକ ଯୁବତୀ ଭାରତବାସୀଙ୍କୁ ତାହା ଶିଖାଇଛନ୍ତି । ୧୯୨୦ରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତବର୍ଷରେ ଯେତେବେଳେ ଅହିଂସା ଓ ଅସହଯୋଗ ଆନ୍ଦୋଳନ ପ୍ରଥମେ ଆରମ୍ଭ ହୁଏ ଓ ସହସ୍ର ସହସ୍ର ନରନାରୀ ଏହି ଆନ୍ଦୋଳନରେ ଯୋଗଦେଇ ଚରମ ତ୍ୟାଗ ଓ ଦୁଃଖ ବରଣର ଆଦର୍ଶ ଦେଖାଇଲେ ସେତେ-ବେଳେ ବଙ୍ଗଳା ଯୁବକ ଯୁବତୀଙ୍କର ତ୍ୟାଗ ଓ ଦୁଃଖ-ବରଣ ସେମାନଙ୍କୁ କମ୍ ପ୍ରେରଣା ଓ ଉଦ୍ଦୀପନା ଦେଇ ନ ଥିବ । ହିଂସାତ୍ମକ ଆନ୍ଦୋଳନରେ ବଙ୍ଗଳା ଯେପରି ଅଗ୍ରଣୀ ହୋଇ ବାହାରିଥିଲା ଅହିଂସ ଆନ୍ଦୋଳନରେ ସେହିପରି ଅଗ୍ରଣୀ ହୋଇ ସମଗ୍ର ଭାରତ ବର୍ଷରେ ଖ୍ୟାତି ଅର୍ଜି ଥିଲା । ବଙ୍ଗଳାର ଯୁବକମାନଙ୍କ ଭିତରେ ରାଜନୈତିକ ମତବାଦ ନେଇ ବାଦ ବିବାଦ ଥିଲେ ମଧ୍ୟ ଜାତୀୟ ବିପ୍ଳବ ବେଳେ ସେମାନେ ବିପ୍ଳବକୁ ଉପଯୁକ୍ତ କରିବା ପାଇଁ ସମସ୍ତେ ଯେ ଏକ ହୋଇଥାନ୍ତି ମୁକ୍ତି ବିପ୍ଳବର ଇତିହାସ ତାର ଦୃଷ୍ଟାନ୍ତ ଦେବ । ଅଗଷ୍ଟ ଆନ୍ଦୋ-ଳନରେ ସେହି କଥାହିଁ ଘଟିଥିଲା, ବଙ୍ଗଳାର କମ୍ୟୁନିଷ୍ଟ ଦଳକୁ ଛାଡ଼ିଦେଲେ ଅନ୍ୟାନ୍ୟ ସମସ୍ତ ଦଳ ଏହି ବିପ୍ଳବର କର୍ମପନ୍ଥା ଅନୁସରଣ କରି ବଙ୍ଗଳାର ସୁନାମ ରକ୍ଷିଥିଲେ । ଅଗଷ୍ଟ ବିପ୍ଳବ ପୂର୍ବରୁ ବଙ୍ଗଳାର ପ୍ରାୟ ସମସ୍ତ ଦକ୍ଷିଣ କଂଗ୍ରେସ ଓ ଫରୱାର୍ଡ ବ୍ଲକର ନେତାମାନେ ଗିରଫ ହୋଇ ଯାଇଥିଲେ । କମ୍ୟୁନିଷ୍ଟ ଦଳକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଦଳର ନେତାମାନେ ସରକାରଙ୍କ ଦୃଷ୍ଟିରେ ବିପ୍ଳବୀ । ଆନ୍ତର୍ଜାତିକ ଅବସ୍ଥାର ସୁଯୋଗ ନେଇ ସେମାନେ ଯେତେବେଳେ ବା ବିପ୍ଳବ ଘଟାଇଦେବେ ବୋଲି

ସରକାରଙ୍କର ସବୁବେଳେ ସେମାନଙ୍କ ପ୍ରତି ସନ୍ଦେହ ହୋଇ-ଥିଲା । ତେଣୁ ଅଗଷ୍ଟ ଆନ୍ଦୋଳନବେଳେ ସେମାନେ ବଙ୍ଗଳାର ଯୁବକ ଯୁବତୀଙ୍କୁ ନେତୃତ୍ୱ ଦେଇ ପାରିଲେ ନାହିଁ । ମାତ୍ରାନେକ ବିପ୍ଳବ ସେମାନଙ୍କୁ ଅପେକ୍ଷା କଲା ନାହିଁ । ଯେଉଁମାନେ ବାହାରେ ରହିଥିଲେ ସେମାନେ ନେତୃତ୍ୱ ନେଲେ ଏବଂ ବଙ୍ଗବାସୀ ଅଗଷ୍ଟ ବିପ୍ଳବରେ ଏକ ଗୌରବମୟ ଇତିହାସ ରଚନା କଲେ । ବିହାର ଓ ଯୁକ୍ତ ପ୍ରଦେଶ ପରି ବଙ୍ଗଳାରେ ଅଗଷ୍ଟ ଆନ୍ଦୋଳନ ବ୍ୟାପକ ଭାବରେ ଗଣସଂଗ୍ରାମ ରୂପେ ପ୍ରକାଶ ପାଇ ନ ଥିଲେ ମଧ୍ୟ ବଙ୍ଗଳାର ଜନସାଧାରଣଙ୍କ ମନ ଉପରେ ଏହି ବିପ୍ଳବର ଆବେଗ ରହି ଯାଇଛି । ବଙ୍ଗଳାର ଜନସାଧାରଣଙ୍କ ହୃଦୟରେ ଯେଉଁ ବିକ୍ଷୋଭ ପୁଞ୍ଜୀଭୂତ ହୋଇଥିଲା, ସ୍ୱାଧୀନତାର ଗ୍ଳାନିରୁ ମୁକ୍ତି ପାଇବାର ଯେଉଁ ସ୍ପୃହା ବଙ୍ଗଳାର ଯୁବକ ଯୁବତୀଙ୍କୁ ୧୯୦୫ ମସିହାରୁ ବୈପ୍ଳବିକ ଚେତନାରେ ଉଦ୍‌ବୁଦ୍ଧ କରି ରଖିଛି ତାହା ଅଗଷ୍ଟ ବିପ୍ଳବରେ ଯେ ଆତ୍ମପ୍ରକାଶ କରନ୍ତା ଏଥିରେ ସନ୍ଦେହ ନାହିଁ । ବଙ୍ଗଳାର ମେଦନୀପୁର ଜିଲ୍ଲାର ତମଲୁକ ଓ କାନ୍ଥିରେ ଏହି ବିପ୍ଳବ ସ୍ଥାୟୀ ହୋଇଥିଲା ।

ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନେ ଗିରଫ ହେବାର ସଂବାଦ ପାଇବାର ୩ ଦିନ ପରେ ମଧ୍ୟ କଲିକତା ସହର ଶୁନଶାନ ଥିଲା ବୋଲି କୁହାଯାଇ ପାରେ । ୧୨ ତାରିଖ ପର୍ଯ୍ୟନ୍ତ କଲିକତାର ସଭା ସମିତିରେ ପୋଲିସ ହସ୍ତକ୍ଷେପ କରି ନ ଥିଲା । ବିକ୍ଷୋଭ ପ୍ରଦର୍ଶନକାରୀ ଛାତ୍ର ଓ ଜନସାଧାରଣ ରାସ୍ତାରେ ଟ୍ରାମ ଓ ବସରେ ଯାଉଥିବା ଯାତ୍ରୀମାନଙ୍କୁ ଓହ୍ଲାଇ ପଡ଼ିବାକୁ ଅନୁରୋଧ କରୁଥିଲେ । ଏହିମାନଙ୍କ ଉପରେ ପୋଲିସ ପ୍ରଥମେ ଲାଠି ଚଳେଇ ୩ଜଣ ଛାତ୍ରଙ୍କୁ ଗିରଫ କଲେ । ତାପରେ ଅଧିକ

ଅଧିକ ବିକ୍ଷୋଭ ପ୍ରଦର୍ଶନ ଚାଲିଲା ଓ ଦୋକାନୀମାନଙ୍କୁ ହରତାଳ କରିବା ପାଇଁ ନିବେଦନ କରାଗଲା । ତାପରେ ବିକ୍ଷୋଭକାରୀଙ୍କୁ ଛତ୍ରଭଙ୍ଗ କରିଦେବା ପାଇଁ ପ୍ରଥମ ଥର ଲୁହ ବୁହା ଗ୍ୟାସ ପୋଲିସ ବ୍ୟବହାର କଲେ । ଫଳରେ କଲିକତାର ଛାତ୍ରଅଞ୍ଚଳ ସମେତ ଓ ଜନସାଧାରଣ ସମବେତ ହୋଇ ଶୋଭାଯାତ୍ରା, କର ଟ୍ରାମ ପ୍ରଭୃତି ବନ୍ଦ କରି ଲୋକଙ୍କୁ ଓହ୍ଲାଇବା ଓ ହରତାଳ କରାଇବାରେ ଲାଗିଲେ । ଏଣେ ସେମାନଙ୍କୁ ଦମନ କରିବାକୁ ଗୁଳି ଚାଲିଲା । କଲିକତାର ବାୟୁ ମଣ୍ଡଳ ବନ୍ଧୁକ ଓ ରିଭଲଭର ଶବ୍ଦରେ କମ୍ପମାନ ହେଲା ଓ ସମସ୍ତ ପୋଲିସ ବାହିନୀ ବିଶେଷତଃ ଇଉରୋପୀୟାନ୍ ଓ ଅଙ୍ଗ୍ଲୋଇଣ୍ଡିଅନ ସୈନ୍ୟ କଲିକତାର ଗଳି କନ୍ଦିରେ ପଶି ବିକ୍ଷୋଭକାରୀଙ୍କ ଉପରେ ଦମନ ଚଳାଇଲେ । କିଛିଦିନ ହେଲା ବମ୍ବେ ଓ ଅନ୍ୟାନ୍ୟ କେତେକ ସ୍ଥାନରେ ଯାହା-ସବୁ ଘଟିଥିଲା ଠିକ୍ ସେହିଭଳି ଦୃଶ୍ୟ କଲିକତାରେ ଦେଖାଗଲା । ୧୯୨୧, ୧୯୩୦ ଓ ୩୨ରେ ଯାହା ଘଟିଥିଲା ଏ ଦୃଶ୍ୟ ତାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଇ ୧୯୪୨ର ଦୃଶ୍ୟ ଲୋକଙ୍କର ଗୃହଗୋଳର ଫରାସୀ ବିପ୍ଳବର ବର୍ଣ୍ଣନା ସ୍ମରଣ କରାଇ ଦେଉଥିଲା । ସବୁ ଶ୍ରେଣୀ ଓ ସବୁ ଗୋଷ୍ଠୀର ଲୋକ, ଏପରିକି ୧୦ ବର୍ଷରୁ କମ୍ ଛୋଟ ଛୋଟ ପିଲାମାନେ ଏହି ବିପ୍ଳବରେ ଭାଗ ନେଇଥିଲେ । ସାଧାରଣ ଚଳା-ଚଳ ଏକପ୍ରକାର ବନ୍ଦ ହୋଇ ଯାଇଥିଲା ବୋଲି କହିଲେ ଚଳେ । ସମସ୍ତ ଭାରତୀୟ ଦୋକାନ ବନ୍ଦ ହୋଇଥିଲା ଓ ବଜାର ସବୁ ମରୁଭୂମି ଭଳି ଦେଖା ଯାଉଥିଲା । ସହର ଭିତରେ ଟ୍ରାମ, ବାସ୍ ଚାଲି ପାରୁ ନ ଥିଲା । ଯଦି କୌଣସି ଟ୍ରାମ ସହର ଭିତରେ ଦେଖା ଯାଉଥିଲା ତା ହେଲେ ତାର ଇଲେକଟ୍ରିକ ତାର କାଟି ଦେଇ ବନ୍ଦ କରି ଦିଅ ହେଉଥିଲା । କିମ୍ବା ତା ଦେହରେ ନିଆଁ ଲଗାଇ

ଦଗ୍ଧ ହେଉଥିଲା । ରାସ୍ତା ସବୁ ପଥର, କାଠ ଗଣ୍ଡି ପ୍ରଭୃତି ଗଦା ହୋଇ ବନ୍ଦ ହୋଇ ଯାଉଥିଲା । ମାଇଲ ମାଇଲ ଧରି ଟେଲିଗ୍ରାଫ ଓ ଟେଲିଫୋନ ତାର କାଟି ଦିଆ ହୋଇଥିଲା । ସାମରିକ ଲରୀରେ ରାଇଫଲ ଧରି ସୈନ୍ୟ ଓ ପୋଲିସମାନେ ଯାଉଥିବା ବେଳେ ଲୋକେ ସେମାନଙ୍କ ଉପରକୁ ଟେକା ପଥର ଫୋପାଡ଼ି ଆକ୍ରମଣ କରୁଥିଲେ । ଏମିତି ଗଳି ଆଲୁଅ ଓ ଚିଠି ବାକ୍ସ ସବୁ ଭାଙ୍ଗି ଫୋପାଡ଼ି ଦେଉଥିଲେ । ବହିଳା ସ୍କୁଲ କଲେଜର ଛାତ୍ର ଓ କାରଖାନାର ଅସଂଖ୍ୟ ଶ୍ରମିକ ପୋଲିସ ନିଷେଧ ନ ମାନି ସହରର ରାସ୍ତାଘାଟରେ ଶୋଭାଯାତ୍ରା କରି ଯାଇ ଲାଠିମାଡ଼ ଓ ଗୁଳିର ସମ୍ମୁଖୀନ ହୋଇଥିଲେ । ଏହି ଆନ୍ଦୋଳନର ଗୋଟାଏ ନୂଆ କଥା ହେଉଛି ଯେ ସାହେବୀ ପୋଷାକ ଉପରେ ବିଶେଷ ଭାବରେ ବିଲାତି ଟୋପି ଓ ଟାଇ ଉପରେ ବେଶି ଆକ୍ରମଣ ହୋଇଥିଲା । ମୋଟରେ ବ୍ରିଟିଶ ଶାସନର ପ୍ରତୀକ ପ୍ରତ୍ୟେକ ଜିନିଷ ଉପରେ ଆକ୍ରମଣ ହୋଇଥିଲା । କଲିକତା ସହରକୁ ଜନସାଧାରଣ ଅବରୋଧ କରି ରଖିଲାଭଳି ମନେ ହେଉଥିଲା ଏବଂ କେତେ ଜାଗାରେ ପୋଲିସ ଓ ଲୋକଙ୍କ ଭିତରେ ରୀତିମତ ସଂଘର୍ଷ ଲାଗି ଯାଉଥିଲା । ସହରର କେତେକ ସ୍ଥାନ ଛୋଟ ଯୁଦ୍ଧ କ୍ଷେତ୍ରରେ ପରିଣତ ହେଲାଭଳି ଦେଖା ଯାଉଥିଲା । ମାତ୍ର ଏହି ବିପ୍ଳବକୁ ଦବାଇବା ପାଇଁ ଯେଉଁ ନିଷ୍ଠୁର ଦମନନୀତି ପ୍ରୟୋଗ କରାଯାଇଥିଲା ବଙ୍ଗଳା ଇତିହାସରେ ତାର ମଧ୍ୟ ତୁଳନା ନାହିଁ । ଖବରକାଗଜ ଗୁଡ଼ିକୁ ଏପରି ଜବତ କରି ଦିଆ ହେଲା ଯେ ସେମାନେ କେବଳ ସରକାର ଯାଞ୍ଚ କରାଯାଇଥିବା ଖବର ପ୍ରକାଶ କରି ପାରୁଥିଲେ ।

# ତାମ୍ରଲିପ୍ତି ଜାତୀୟ ସରକାର

୧୯୪୨ ଡିସେମ୍ବର ୧୭ ତାରିଖରେ ତାମ୍ରଲିପ୍ତି ଜାତୀୟ ସରକାର ଗଢ଼ା ହୋଇଥିଲା । ସୁତାହାଟ, ନନ୍ଦୀଗ୍ରାମ, ମହିଷାଦଳ ଓ ତମଲୁକ ଥାନାମାନଙ୍କରେ ଗୋଟିଏ ଗୋଟିଏ ଜାତୀୟ ସରକାର ଗଢ଼ା ହୋଇଥିଲା, ମାତ୍ର ଏ ସମସ୍ତ ସରକାର ତାମ୍ରଲିପ୍ତି ଜାତୀୟ ସରକାରଙ୍କ ନିର୍ଦ୍ଦେଶ ଓ ତତ୍ତ୍ୱାବଧାନରେ ଚଳୁଥିଲେ । ଅସାଧାରଣ ଅବସ୍ଥା ଦୃଷ୍ଟିରୁ ନିର୍ବାଚନ କରାଯାଇ ପାରି ନ ଥିଲା । କଂଗ୍ରେସ କମିଟି ଜଣେ ସର୍ବାଧିନାୟକ ନିଯୁକ୍ତ କରିଥିଲେ । କଂଗ୍ରେସ କମିଟିର ନିର୍ଦ୍ଦେଶ ଓ ନିୟମ ପାଳନ କରି ସେହି ସର୍ବାଧିନାୟକ ଚଳୁଥିଲେ । ବିଭିନ୍ନ ବିଭାଗର ଭାର ବହନ କରିବାକୁ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରିବା କ୍ଷମତା ତାଙ୍କର ଥିଲା ମାତ୍ର ସବ୍‌ଡିଭିଜନାଲ୍ କଂଗ୍ରେସ କମିଟି ସେହି ସବୁ ନିଯୁକ୍ତିରେ ପରିବର୍ତ୍ତନ କରି ପାରନ୍ତି ବୋଲି ସ୍ଥିର ହୋଇଥିଲା । ସର୍ବାଧିନାୟକ ନିଜେ ଯୁଦ୍ଧ ବିଭାଗ ମନ୍ତ୍ରୀ ଥିଲେ । ଶାନ୍ତି ଓ ଶୃଙ୍ଖଳା, ସ୍ୱାସ୍ଥ୍ୟ, ଶିକ୍ଷା, ବିଚାର, କୃଷି ଓ ପ୍ରଚାର ପ୍ରଭୃତି ପ୍ରଧାନ ପ୍ରଧାନ ବିଭାଗ ଗୁଡ଼ିକ ଜଣେ ଜଣେ ମନ୍ତ୍ରୀଙ୍କ ଅଧୀନରେ ରହିଥିଲା । ବିଦ୍ୟୁତ୍ ବାହିନୀ ଗଢ଼ା ହୋଇଥିଲା । ଏହି ବାହିନୀର ପ୍ରତ୍ୟେକ ଦଳ ଜଣେ ଜଣେ ସେନାପତିଙ୍କ ଅଧୀନରେ ଥିଲା । ଏହି ବାହିନୀରେ ତିନୋଟି ବିଭାଗ ଥିଲା ଯଥା;— ୧—ଲଢ଼ୁଆ ବିଭାଗ, ୨—ଗୋଇନ୍ଦା ବିଭାଗ ଓ ୩—ଚିକିତ୍ସା ବିଭାଗ । ଏହି ବିଦ୍ୟୁତ୍-ବାହିନୀ ଜାତୀୟ ସରକାରଙ୍କର ଜାତୀୟ ସୈନ୍ୟ ବାହିନୀ ରୂପେ କାର୍ଯ୍ୟ କରୁଥିଲେ । ପରେ ପୁଣି ଅଉ ତିନୋଟି ବିଭାଗ ଏଥିରେ ଯୋଗ କରାଯାଇଥିଲା । (୧) ଗରିଲା ବିଭାଗ (୨) ମହିଳା ସୈନ୍ୟ (୩) ଶାନ୍ତି ଓ ଶୃଙ୍ଖଳା ।

ଏହି ଶାନ୍ତି ଓ ଶୃଙ୍ଖଳା ବିଭାଗ ବିଶୃଙ୍ଖଳା ସୃଷ୍ଟି କରୁଥିବା ସ୍ବେଚ୍ଛାସେବକମାନଙ୍କୁ ଗିରଫ କରୁଥିଲେ । ଜାତୀୟ ସରକାର ଏହି ସବୁ ସ୍ବେଚ୍ଛାସେବକମାନଙ୍କର ବିଚାର କରି ଉଚିତ ଦଣ୍ଡ ଦେଉଥିଲେ । "୧୯୪୨-୪୩ରେ ଭାରତ ଗଣ୍ଡଗୋଳର କେତେକ ଘଟଣା" ନାମ ଦେଇ ସରକାର ଯେଉଁ ପ୍ରଚାର ପୁସ୍ତିକାଟି ପ୍ରକାଶ କରିଥିଲେ ତହିଁରେ ଏହି ଅନୁଷ୍ଠାନକୁ ପ୍ରଶଂସା କରାଯାଇ ଲେଖା ହୋଇଛି । ବଙ୍ଗଳାର ମେଦିନୀପୁରରେ ବିଦ୍ରୋହୀମାନେ ଯାହା କରିଥିଲେ ତହିଁରେ ବିଶେଷ ଯତ୍ନ ଓ ପରିକଳ୍ପନାର ସୂଚନା ମିଳିଥିଲା । ଏକ କାର୍ଯ୍ୟକାରୀ ସତର୍କ କରିଦେବା ସୂତ୍ର ଖଞ୍ଜା ଯାଇଥିଲା । ପ୍ରାଥମିକ ସାମରିକ କୌଶଳପୂର୍ଣ୍ଣ ନୀତିମାନ ଅବଲମ୍ବନ କରାଯାଇଥିଲା । ଦୃଷ୍ଟାନ୍ତ ସ୍ବରୂପ-ପୂର୍ବ ପରିକଳ୍ପନା ଅନୁସାରେ ସଂକେତ ପାଇଲା ମାତ୍ରେ ଘେରି ଯିବା ଓ କବାଟ ଦେଇ ଅନ୍ୟ ଅଡ଼କୁ ମାଡ଼ି ଚାଲିଯିବା । ବିଶୃଙ୍ଖଳା ଘଟାଉଥିବା ଲୋକଙ୍କ ପଛେ ପଛେ ଡାକ୍ତର ଓ ଧାତ୍ରୀମାନେ ଆହତଙ୍କ ସେବା କରିବା ପାଇଁ ଯାଉଥିଲେ । ଗୋଇନ୍ଦା ବିଭାଗ ଖୁବ୍ କାର୍ଯ୍ୟଦକ୍ଷ ଥିଲେ ।

ଜାତୀୟ ସରକାରଙ୍କ ବିଭିନ୍ନ ବିଭାଗ କିପରି କାମ କରୁଥିଲେ ତାର ଏକ ବିବରଣୀ ତଳେ ଦିଆଗଲା । (କ) ବିଚାର ବିଭାଗ-ଜାତୀୟ ସରକାରଙ୍କର ଏହି ବିଭାଗଟି ସର୍ବାପେକ୍ଷା ଅଧିକ ଲୋକପ୍ରିୟ ବିଭାଗ ଥିଲା । ପ୍ରତ୍ୟେକ ଥାନା ଜାତୀୟ ସରକାରଙ୍କର ଜଣେ ଜଣେ ବିଚାର-ବିଭାଗ ମନ୍ତ୍ରୀଙ୍କ ଅଧୀନରେ ଗୋଟିଏ ଗୋଟିଏ ବିଚାର ବିଭାଗ ରଖିଥିଲେ । ଗୋଟିଏ ମକଦ୍ଦମା ଦାଏର କରିବାକୁ ହେଲେ ଟଙ୍କାଟିଏ ଫିସ ଦେବାକୁ ପଡୁଥିଲା । ପରେ ଏହି ଫିସକୁ ଦୁଇଟଙ୍କା ପର୍ଯ୍ୟନ୍ତ ବଢ଼ାଇ ଦିଆ ହୋଇଥିଲା ।

ଖାନୁଆସି ପଦ୍ମଲାଠାରୁ କଚ୍ଛୁସି ମକଦ୍ଦମା ପାଇଁ ୪୨୮ ଅଧିକା ଫିସ ପଡୁଥିଲା । ଫୌଜଦାରି ଓ ଜମି ସଂକ୍ରାନ୍ତୀୟ ସମସ୍ତ ମକଦ୍ଦମା-ମାନ ଏହି ବିଭାଗ ବିଚାର କରୁଥିଲେ । ଥାନା ଶାଗୀୟ ସରକାରଙ୍କ ବିଚାର ବିରୁଦ୍ଧରେ ଲୋକେ ସବ୍‌ଡିଭିଜନାଲ ଶାଗୀୟ ସରକାରଙ୍କ ନିକଟରେ ଅପିଲ କରି ପାରୁଥିଲେ । ସବ୍‌ଡିଭିଜନାଲ ଶାସୀୟ ସରକାରଙ୍କ ରାୟ ବିରୁଦ୍ଧରେ ତିନିଜଣ ବିଚାରପତିଙ୍କୁ ନେଇ ଗଠିତ ହୋଇଥିବା ସର୍ବୋଚ୍ଚ ଅଦାଲତରେ ଅପିଲ କରାଯିବାର ବ୍ୟବସ୍ଥା ଥିଲା ।

ଜନସାଧାରଣଙ୍କ ସୁବିଧା ପାଇଁ ଭିନ୍ନ ଭିନ୍ନ ସ୍ଥାନରେ କୋର୍ଟ ବସୁଥିଲା ଓ ବିଚାର କରାଯାଉଥିଲା । କୋର୍ଟରେ ବିଚାର ହେଉଥିବା ବେଳେ ସାଧାରଣ ଲୋକଙ୍କୁ କୋର୍ଟ ଭିତରକୁ ଆସିବା ପାଇଁ ଛାଡ଼ ଦିଆ ହେଉଥିଲା । ସମୟ ସମୟରେ ୨୦୦।୩୦୦ ଲୋକ ଜମା ହୋଇ ପଡ଼ୁଥିଲେ । ସବ୍‌ଡିଭିଜନାଲ କମିଟି, ଜିଲ୍ଲାକୋର୍ଟ ଓ ହାଇକୋର୍ଟର ବହୁଦିନର ପୁରୁଣା ଅନେକ ମକଦ୍ଦମା ଶାସୀୟ ସରକାରଙ୍କ ମଧ୍ୟସ୍ଥତାରେ ନିଷ୍ପତ୍ତି ହୋଇ ପାରୁଥିଲା । ସମୟ ସମୟରେ ଓକିଲ ଓ ମୁକ୍ତିଆରମାନେ କୋର୍ଟରେ ଉପସ୍ଥିତ ରହୁଥିଲେ । ବିଚାର ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଅଭିଯୁକ୍ତ ଅସାମୀମାନଙ୍କୁ ସତର୍କ କରିଦେବା, ଜୋରିମାନା, କୋର୍ଟ ଶେଷ ହେବା ପର୍ଯ୍ୟନ୍ତ ଅଟକ ରଖିବା ଓ ବେତମାଡ଼ ପ୍ରଭୃତି ଦଣ୍ଡମାନ ଦିଆ ଯାଉଥିଲା । ଡିକ୍ରୀଜାରିକୁ କାର୍ଯ୍ୟକାରୀ କରି ସମ୍ପତ୍ତି ବାଡ଼ ସବୁ ସରକାର ବାଜ୍ୟାପ୍ତ କରି ନେଉଥିଲେ । ମାତ୍ର ସମ୍ପତ୍ତି ବାଜ୍ୟାପ୍ତ ବା ବିକ୍ରି କେବଳ ସାମାନ୍ୟ କେତେକ ସ୍ଥଳରେ କରାଯାଉଥିଲା । କେବଳ ବୁଝେଇ ସୁଝେଇ ଯେଉଁଠି କାମ କର ହେଉ ନ ଥିଲା ସେଇଠି ଏହା କରାଯାଉଥିଲା । ଶାସୀୟ

ସରକାରର ସମ୍ମାନ ଏବଂ ଉଚ୍ଚସ୍ଥାନ ଅଧିକାର କରିଥିଲା ସେ ଅଧିକାଂଶ ସ୍ଥଳରେ କୋର୍ଟରେ ମିଳାମିଶା କରି ଦିଆ ହେଉଥିଲା ଓ ଉଭୟପକ୍ଷ ଏହି ମିଳା ମିଶାକୁ ଖୁସିରେ ମାନି ଯାଉଥିଲେ । ସୁତାହାଟ ଜାତୀୟ ସରକାର କୋର୍ଟରେ ୮୩୭ଟି ମକଦ୍ଦମା, ନନ୍ଦ ଗ୍ରାମରେ ୨୨୨ଟି ମକଦ୍ଦମା, ମହିଷାଦଳରେ ୧୦୫୫ଟି ମକଦ୍ଦମା ଓ ତମଲୁକରେ ୨୬୪ଟି ମକଦ୍ଦମା ବିଚାର କରାଯାଇ-ଥିଲା । ମୋଟରେ ୨୧୯୦୭ ମକଦ୍ଦମା ବିଚାର କରାଯାଇଥିଲା । ଏହା ଭିତରୁ ୧୭୮୧ଟି ମକଦ୍ଦମା ମଧ୍ୟସ୍ଥତାରେ ନିଷ୍ପତ୍ତି କରି ଦିଆ ହୋଇଥିଲା । ଜାତୀୟ ସରକାର ଭାଙ୍ଗିଦିଅ ହେବା ପୂର୍ବରୁ ଯେଉଁମାନେ ବିଚାରାଧୀନ ଥିବା ମକଦ୍ଦମାର ଫିସ୍ ସବୁ ଦାଖଲ କରିଥିଲେ ସେମାନଙ୍କୁ ତାହା ଫେରସ୍ତ କରି ଦିଆ ହୋଇଥିଲା ।

ସ୍ୱାସ୍ଥ୍ୟ ଓ ଜନସାଧାରଣଙ୍କ ନିରାପଦତା—ଏହି ସବୁ ବିଭାଗ ଦୁର୍ଭିକ୍ଷ ଓ ରୋଗ ନିବାରଣ କରିବା ଦିଗରେ ଯଥା ସାଧ୍ୟ ଚେଷ୍ଟା କରିଥିଲେ । ଲୁଗାପଟା, ଧାନ ଚାଉଳ, ଟଙ୍କା ପଇସା ବିଭିନ୍ନ ସ୍ଥାନରେ ସଂଗ୍ରହ କରାଯାଇ ଗରିବ ଲୋକମାନଙ୍କ ଭିତରେ ବାଣ୍ଟି-ଦିଆ ହେଉଥିଲା । ଧନୀ ମହଜୁତ୍‌କାରୀ ଓ ଲାଭଖୋରମାନଙ୍କ ଶୋଷଣ ବନ୍ଦ କରିବାକୁ ଜାତୀୟ ସରକାର ନୋଟିସ ଦେଇଥିଲେ । ସେମାନେ ସେମାନଙ୍କର ଗଚ୍ଛିତ ଧାନ ଓ ଟଙ୍କା ପଇସା ଦେଇ ଦେବାକୁ ବାଧ୍ୟ ହେଉଥିଲେ ଏବଂ ଏହି ଟଙ୍କା ପଇସା ଓ ଧାନ ଗରିବ ଲୋକମାନଙ୍କୁ ବାଣ୍ଟି ଦିଆ ହେଉଥିଲା । ଦୁର୍ଭିକ୍ଷ ପଡ଼ିଥିବା ବେଳେ ଜାତୀୟ ସରକାରଙ୍କ ସୈନ୍ୟ ଶିବିରର ସଭ୍ୟମାନେ ଦିନକରେ ଥରେ ମୁଗସିଝା ଓ ଥରେ ଭାତ ଖାଉଥିଲେ । ତାପରେ ୯ମାସ କାଳ ଜଣ ଛଟାଙ୍କି ଚାଉଳର ଭାତ

ଥରେ ଓ ଆଉ ଥରେ ଅଧଗାଏ ମୁଗସିଝା ଖାଉଥିଲେ । ମୋଟରେ ୫୭୬୦୦୦୯ ମୂଲ୍ୟର ଲୁଗା ଔଷଧ, ଧାନ ଓ ଗୁଡ଼ଳ ବାଣ୍ଟି ଦିଆ ହୋଇଥିଲା ।

ଶାନ୍ତି ଓ ଶୃଙ୍ଖଳା—ଏହି ବିଭାଗ ସବ୍‌ଡିଭିଜନରେ ଗୋଇନ୍ଦା ବିଭାଗ ସାହାଯ୍ୟରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରୁଥିଲେ ଏହି ବିଭାଗ ବହୁ ସଂଖ୍ୟକ ଚୋର ଓ ଡକାଏତଙ୍କୁ ଦଣ୍ଡ ଦେଇ-ଥିଲେ । ବ୍ରିଟିଶ ସରକାର ନାମଜାଦା ଡକାଏତମାନଙ୍କୁ ଖଲାସ କରି ଦେଇଥିଲେ ଓ ଅନେକ ସମୟରେ ଚୋର ଡକାଏତ କରିବା ପାଇଁ ସେମାନଙ୍କୁ ଉତ୍ସାହ ଦିଆ ହେଉଥିଲା । ଏହିସବୁ ଡକାଏତଙ୍କ କବଳରେ ପଡ଼ି ଯେଉଁମାନେ ଦୁଃଖକଷ୍ଟ ଭୋଗୁଥିଲେ ପୋଲିସ ଷ୍ଟେସନ ସେମାନଙ୍କୁ କୌଣସି ସାହାଯ୍ୟ ଦେଉ ନ ଥିଲେ । ଜାତୀୟ ସରକାର ଏହିସବୁ ଡକାଏତଙ୍କୁ ବନ୍ଦ କରିବା ପାଇଁ ଦୃଢ଼ ପ୍ରତିକାର କରିବାରୁ ଚୋର ଡକାଏତ ଅନେକ ପରିମାଣରେ ବନ୍ଦ ହୋଇ ଯାଇଥିଲା । ସାମାନ୍ୟ ଯେଉଁ କେତେକ ଚୋର ଡକାଏତର ସମ୍ବାଦ ମିଳୁଥିଲା ଜାତୀୟ ସରକାର ତାକୁ ଧରିବା ପାଇଁ ଦୃଢ଼ ବ୍ୟବସ୍ଥା ଅବଲମ୍ବନ କରୁଥିଲେ । ଜାତୀୟ ସରକାର ପ୍ରତିକାରର ଯେଉଁ ସବୁ ବ୍ୟବସ୍ଥା କରିଥିଲେ ସେ ସବୁ ତୁରନ୍ତ କାର୍ଯ୍ୟକାରୀ ହେଉଥିଲା ଓ ଅଳ୍ପ ଖର୍ଚ୍ଚରେ ହେଉଥିଲା । ଏହି ବ୍ୟବସ୍ଥାରେ ସବୁ ଶ୍ରେଣୀର ଲୋକ ସନ୍ତୁଷ୍ଟ ହେଉଥିଲେ ।

ଶିକ୍ଷା ବିଭାଗ—ଅନେକ ସ୍କୁଲକୁ ନିୟମିତ ଭାବରେ ଆର୍ଥିକ ସାହାଯ୍ୟ ଦିଆ ହେଉଥିଲା । ଯୋଗ୍ୟ ଇନ୍‌ସ୍ପେକ୍ଟରମାନେ ସ୍କୁଲକୁ ନିୟମିତ ଭାବରେ ପରିଦର୍ଶନ କରୁଥିଲେ । ପ୍ରଚାର ଓ ଓ ଅର୍ଥ ବିଭାଗ ଜଣେ ଜଣେ ମନ୍ତ୍ରୀଙ୍କ ଅଧୀନରେ କାମ କରୁଥିଲେ । ପୋଲିସ ଓ ଜନସାଧାରଣଙ୍କ ଭିତରେ ଯେଉଁ

ସଂଘର୍ଷ ଚାଲିଥିଲା ତା ଭିତରେ ଯୋଗାଯୋଗ ରାସ୍ତାକୁ ବିଚ୍ଛିନ୍ନ କରିଦେବା ଉଦ୍ଦେଶ୍ୟରେ ୩୦ଟା ପୋଲ ଭଙ୍ଗି ଦିଆ ହୋଇଥିଲା । ୨୭ ମାଇଲ ଟେଲିଗ୍ରାଫ୍ ତାର କାଟି ଦିଆ ହୋଇ ୧୯୪ଟା ଟେଲିଗ୍ରାଫ୍ ଖୁଣ୍ଟ ଓପାଡ଼ି ପକା ହୋଇଥିଲା । ୪ଟା ରାସ୍ତା ଉପରେ ଗଛଡାଳ କାଟି ପକାଇ ବନ୍ଦ କରି ଦିଆ ହୋଇଥିଲା । ଯେଉଁ ସବୁ ସ୍ଥାନକୁ ଦଖଲ କରି ଯାଇ ପାରି ନ ଥିଲା ସେ ସବୁକୁ ପୋଡ଼ି ଜାଳି ଦିଆ ହୋଇଥିଲା । ସେମାନଙ୍କ ଖର୍ଚ୍ଚ ଦିଆ ହୋଇଥିଲା । ୬ଟା ବନ୍ଧୁକ ଓ ୨ଟା ଖଡ୍ଗ କବଜ କରାଯାଇଥିଲା । ୩ଜଣ ସବଡିଭିଜନାଲ ସର୍ବାଧିନାୟକ ମନୋନୀତ ହୋଇ-ଥିଲେ । ୪ର୍ଥ ସର୍ବାଧିନାୟକ ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ପୋଲିସ ନିକଟରେ ଆତ୍ମସମର୍ପଣ କରିଥିଲେ ।

ପୋଲିସ ଅତ୍ୟାଚାର-୧୯୪୨ ଅଗଷ୍ଟ ଠୁ ୧୯୪୪ ଅଗଷ୍ଟ ଏହି ଦୁଇ ବର୍ଷ ଭିତରେ ମୋଟରେ ପୋଲିସ ଓ ସୈନ୍ୟ ଫଉଜ ୨୨ଟା ଜାଗାରେ ଗୁଳି ଚଳେଇ ଥିଲେ, ଯାହା ଫଳରେ ୪୪ ଜଣ ଜୀବନ ହରାଇଥିଲେ । ୧୯୯ ଜଣ ଆହତ ହୋଇଥିଲେ ଓ ୧୪୨ ଜଣ ସାମାନ୍ୟ ଆଘାତ ପାଇଥିଲେ । ୭୩ ଜଣ ସ୍ତ୍ରୀ ଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କରାଯାଇଥିଲା । ୩୧ ଜଣ ସ୍ତ୍ରୀ ଲୋକଙ୍କ ଉପରେ ଏହିଭଳି ଅତ୍ୟାଚାର କରିବାକୁ ଉଦ୍ୟମ କରା-ହୋଇଥିଲା ଓ ୧୫୦ ଜଣ ସ୍ତ୍ରୀ ଲୋକଙ୍କ ସତୀତ୍ୱ ନଷ୍ଟ କରା ଯାଇଥିଲା । ୪୨୨୬ ଜଣ ଲୋକଙ୍କ ଉପରେ ଅତ୍ୟାଚାର କରା-ଯାଇଥିଲା । ୧୦୮ ଜଣଙ୍କୁ ଗିରଫ କରା ଯାଇଥିଲା ଓ ୫୦୬୭ଜଣଙ୍କୁ ବେଆଇନ ଭାବରେ ଅଟକ ରଖା ଯାଇଥିଲା ୯୯ ଜଣଙ୍କୁ ଭାରତ ରକ୍ଷା ଆଇନ ବଳରେ ଅଟକ କରି ରଖା ଯାଇଥିଲା । ୪୦୧ ଜଣ

ସ୍ୱତନ୍ତ୍ର କନଷ୍ଟେବଲ ନିଯୁକ୍ତ ହୋଇଥିଲେ । ପ୍ରାୟ ୧,୩୫,୦୦୦ ଟଙ୍କା ମୂଲ୍ୟର ୧୨୪ଟା ଘର ପୋଡ଼ିପକା ହୋଇଥିଲା ୪୯ଟା ଘରକୁ କ୍ଷତଗ୍ରସ୍ତ କରି ଦିଆ ହୋଇଥିଲା, ଯାହା ଫଳରେ ୮୦୭୫ ଟଙ୍କା ନଷ୍ଟ ହୋଇଛି । ୧୦୪୦ଟି ଘର ଓ ୨,୧୨,୭୯୫ଟଙ୍କା ମୂଲ୍ୟର ଜିନିଷପତ୍ର ଲୁଟପାଟ କରି ନିଆ ହୋଇଥିଲା । ୧୩,୭୩୦ଟା ଘର ଖାନତଲାସ ହୋଇଥିଲା ଓ ୨୭ଟା ଦଖଲ କରି ନିଆ ହୋଇଥିଲା । ୫୯ଟା ପରିବାରର ୨୫,୩୭୨ ଟଙ୍କା ମୂଲ୍ୟର ସମ୍ପତ୍ତି ସରକାରରୁ ବାଜ୍ୟାପ୍ତ କରି ନିଆ ହୋଇଥିଲା । ମୋଟରେ ୧,୯୦,୦୦୦ ଟଙ୍କା ସମୂହ ଜୋରିମାନା ଧାର୍ଯ୍ୟ କରି ଯାଇଥିଲା ଓ ୧୯ଟା ବିଭିନ୍ନ ଅନୁଷ୍ଠାନକୁ ବେଆଇନ ଘୋଷଣା କରାଯାଇଥିଲା । ଅହିଂସ ଜନତା ସୁତାହାଟ ପୋଲିସ ଷ୍ଟେସନ ଦଖଲ କରୁଥିବା ବେଳେ ଉଡ଼ାଜାହାଜରୁ ସେମାନଙ୍କ ଉପରେ ଗୁଳି ମାଡ଼ ହୋଇଥିଲା ।

## କଣ୍ଟାଇରେ ଜାତୀୟ ସଂଗ୍ରାମ

ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କ ଗିରଫ ସମ୍ବାଦ ପାଇ ଅଗଷ୍ଟ ୧୩ ତାରିଖରେ କଣ୍ଟାଇ ସବ୍‌ଡିଭିଜନର ପଟାସପୁର, ଭବାନୀପୁର ଓ ଖେଜୁରି ପୋଲିସ ଷ୍ଟେସନରେ ପ୍ରଥମେ ହରତାଳ ପାଳିତ ହୋଇଥିଲା । ତା ପରେ ବିଭିନ୍ନ ସ୍କୁଲର ଛାତ୍ରମାନେ ଧର୍ମଘଟ କରି ସେମାନଙ୍କର ପ୍ରତିବାଦ ଜଣାଇଲେ । ଅଗଷ୍ଟ ୨୦ ତାରିଖରେ କଣ୍ଟାଇରେ ସର୍ବାପେକ୍ଷା ସଫଳତାପୂର୍ଣ୍ଣ ହରତାଳ ପାଳିତ ହେଲା । ସବ୍‌ଡିଭିଜନର ଚାରିଆଡ଼େ ଜନସାଧାରଣଙ୍କ ଭିତରେ ଉତ୍ସାହ ଓ ଉତ୍ତେଜନା ଆଣି ଦେବା ପାଇଁ ଓ ସ୍ୱାଧୀନତା ସଂଗ୍ରାମର କର୍ମପନ୍ଥା ବୁଝେଇ ଦେବାକୁ ଶହ ଶହ ସଭାର ଆୟୋଜନ ହୋଇଥିଲା ଓ ସବ୍‌ଡିଭି-

ଜନର ପ୍ରାୟ ପ୍ରତିଗାଁରେ ଶହ ଶହ ଶୋଭାଯାତ୍ରା ବାହାରିଥିଲା । ବଉଳ ଥାନାକୁ ସଂଗଠିତ କରିବା ପାଇଁ ପ୍ରାୟ ୮୦୦୦ କର୍ମୀ ସ୍ୱେଚ୍ଛାସେବକ ତାଲିକାଭୁକ୍ତ ହୋଇଥିଲେ ଓ ସେମାନଙ୍କୁ ଶିକ୍ଷା ଦେବା ପାଇଁ ଗୁରୁଅଡ଼େ ଶିକ୍ଷା ଶିବିରମାନ ସ୍ଥାପିତ ହେଲା । ଏହି ସଂଗଠନ ଏପରି ବ୍ୟାପକ ହୋଇଥିଲା ଯେ କୌଣସି ଗାଁ ମଧ୍ୟ ଏଥିରୁ ବାଦ୍ ପଡ଼ି ନ ଥିଲା । ଗୁରୁଅଡ଼େ ପ୍ରବଳ ଉତ୍ତେଜନା ଖେଳି ଯାଇଥିଲା । ପୋଲିସ ସଭାରେ ଯୋଗ ଦେବାକୁ ସାହସ କରି ନ ଥିଲେ । ଯେଉଁ ସଭାରେ ଅବା ଯୋଗ ଦେଇଥିଲେ ସେଠୁ ତାହାରିକୁ ଗିରଫ କରି ନେବାକୁ ସାହସ କରି ନ ଥିଲେ । ଏହା ଫଳରେ ଅନେକ ସ୍କୁଲ୍ କଲେଜ ବନ୍ଦ ହୋଇ ଯାଇଥିଲା । କଲେଜଠାରୁ ଆରମ୍ଭ କରି ସ୍କୁଲ୍ ପର୍ଯ୍ୟନ୍ତ ଛାତ୍ରମାନେ ସ୍ୱେଚ୍ଛାସେବକ ଶ୍ରେଣୀଭୁକ୍ତ ହୋଇଥିଲେ । ଅନେକ ସ୍କୁଲ୍ ଶିକ୍ଷକ ଇସ୍ତଫା ଦେଇ ଅନ୍ଦୋଳନରେ ଯୋଗ ଦେଇଥିଲେ । ସେପ୍ଟେମ୍ବର ୧୪ ତାରିଖ ଦିନ ୨୦ଟା ଶୋଭାଯାତ୍ରାରେ ୧୦,୦୦୦ ଲୋକ ମଫସଲର ଗୁରୁଅଡ଼ୁ ଆସି ଠିକ୍ ଦିନ ତିନିଟା ବେଳେ ଭଣ୍ଡାରି ସହର ଭିତରେ ୮ଟା ପ୍ରଧାନ ରାସ୍ତା ଦେଇ ପଶିଥିଲେ । ଏହା ଫଳରେ ସହରରେ ଗୋଟାଏ ବିରାଟ ଗୁଞ୍ଜଲ୍ୟ ଖେଳିଯାଇଥିଲା ଓ ସରକାରୀ ଅଫିସର-ମାନେ ଭୀତ ଓ ସନ୍ତ୍ରସ୍ତ ହୋଇ ପଡ଼ିଥିଲେ । ସେମାନେ ନିଜକୁ ରକ୍ଷା କରିବା ପାଇଁ ସାଙ୍ଗେ ସାଙ୍ଗେ ଦ୍ୱାର ବନ୍ଦ କରି ଦେଇଥିଲେ । ଶୋଭାଯାତ୍ରାକାରୀଙ୍କୁ ପୋଲିସ କୌଣସି ବାଧା ଦେଇ ନ ଥିଲେ । ସ୍କୁଲ୍ ଓ କଲେଜମାନଙ୍କରେ ଧର୍ମଘଟ ଓ ପିକେଟିଂ ଜୋର ସୋରରେ ଚାଲିଲା । ସରକାରୀ ଅଫିସମାନଙ୍କୁ ବର୍ଜନ କରିବା ଉଦ୍ଦେଶ୍ୟରେ ଦୈନିକ ଓ ସାପ୍ତାହିକ ହାଟ ସବୁ ଯେପରି ନ ହୁଏ ସେଥିପାଇଁ ଉଦ୍ୟମ କରାଯାଇଥିଲା । ଦୋକାନିମାନଙ୍କୁ ଖାଦ୍ୟ ଜିନିଷ

ଓ ପରବା ପଥ ସହର ଭିତରକୁ ନ ଆଣିବା ପାଇଁ ଅନୁରୋଧ କରାଯାଇଥିଲା । ସେମାନେ ଏଥିରେ ରାଜି ହୋଇ ସହର ଭିତରକୁ ଟେକ୍ସ ଆସିଲେ ନାହିଁ ଏବଂ ଫଳରେ ୩ ସପ୍ତାହ କାଳ କଣ୍ଟାଇ ସହର ମରୁଭୂମିରେ ପରିଣତ ହୋଇଥିଲା । ଦୋକାନମାନଙ୍କଠାରୁ ଜିନିଷପତ୍ର ନେବାକୁ ବାଧ୍ୟ କରାଯାଇ-ଥିଲା । ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହରେ ସହର ଓ ମଫସଲ ଭିତରେ ଯୋଗସୂତ୍ର ଛିନ୍ନ କରିଦେବାକୁ ଚୌକିଦାର ଓ ଦଫାଦାର ମାନଙ୍କୁ ଇସ୍ତଫା ଦେବାପାଇଁ ଅନୁରୋଧ କରାଯାଇଥିଲା । ଏହା ଫଳରେ ଅନେକ ଚୌକିଦାର ଓ ଦଫାଦାର ଆପଣାଛାଏଁ ଇସ୍ତଫା ଦେଇଥିଲେ ଓ ଅନ୍ୟ କେତେକଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କରାଯାଇଥିଲା ।

ଏହା ପରେ ଜନସାଧାରଣଙ୍କ ପକ୍ଷରୁ ଗୁରୁତର ଧ୍ୱଂସ-ମୂଳକ କାମ ଆରମ୍ଭ ହେଲା । ସେପ୍ଟେମ୍ବର ୨୦ ତାରିଖ ଦିନ ପଟାସପୁର ପୋଲିସ ଷ୍ଟେସନ ଉପରେ ଚଢ଼ାଉ ହେଲା । ଏହି ପୋଲିସ ଷ୍ଟେସନର ଜିନିଷପତ୍ରମାନ ନଷ୍ଟ କରି ଦିଆ ହେଉଥିବା ବେଳେ ଥାନା ଅଫିସର ପଳାଇ ଯାଇଥିଲେ ଏବଂ ଥାନାରେ ଥିବା ୪ ଜଣ କନଷ୍ଟେବଲଙ୍କୁ ସଙ୍ଗେ ସଙ୍ଗେ ଗିରଫ କରାଯାଇ-ଥିଲା ଓ ସମସ୍ତ ଜିନିଷପତ୍ର ନଷ୍ଟ କରି ଦିଆ ହେବା ପରେ ସେମାନଙ୍କୁ ଛାଡ଼ି ଦିଆ ହୋଇଥିଲା । ସମସ୍ତ କାଗଜପତ୍ର ଓ ଉପ-କରଣମାନ ପୋଡ଼ି ଦିଆ ହୋଇଥିଲା । ତା ପରେ ପଟାସପୁର ସବ୍‌ରେଜିଷ୍ଟ୍ରାର ଅଫିସ, ଋଣ ପରିଶୋଧ ବୋର୍ଡ଼, ୨ଟା ଇଉନିୟନ ବୋର୍ଡ଼ ଓ ଅଠଟା ପଞ୍ଚାଏତ ଇଉନିଅନ, ପଟାସପୁର ଓ ମାଙ୍ଗଳା-ମାରୋର ଅବକାରୀ ବିଭାଗର ଜିନିଷ ଓ କାଗଜପତ୍ର ଓ ୪ଟା ଡ଼ାକ

ବଙ୍ଗଳାକୁ ପୋଡ଼ି ପକା ହୋଇଥିଲା, ସବୁ ଚଉକିଦାରଙ୍କ ପୋଷା-କରେ ନିଆଁ ଲଗାଇ ଦିଆ ହୋଇଥିଲା । ୨୦ଟା ପଞ୍ଜା ଶଙ୍ଖକୁ ନଷ୍ଟ କରି ଦିଆ ହୋଇଥିଲା । ସେପ୍ଟେମ୍ବର ୨୮ ତାରିଖ ଦିନ ଖେଜୁରି ପୋଲିସ ଷ୍ଟେସନ ଉପରେ ଆକ୍ରମଣ ହେଲା । ଥାନା ଅଫିସର ଓ ୩ ଜଣ କନେଷ୍ଟବଲଙ୍କ ଠାରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନିଆ ହୋଇ ସେମାନଙ୍କୁ ଗିରଫ କରି ରଖାଯାଇଥିଲା ଓ ଥାନା ଅଫିସର ସମସ୍ତ କାଗଜପତ୍ର ଓ ଉପକରଣ, ଖେଜୁରି ସବ୍ ରେଜିଷ୍ଟ୍ରି ଅଫିସ, ହେନେରିଅ ଖାସମାହାଲ ଅଫିସ ଓ ଖଜଣାଖାନାର ସମସ୍ତ କାଗଜପତ୍ର ୟୁନିଅନ ପରିଶୋଧ ବୋର୍ଡ଼ ଓ ୫ଟା ପାଞ୍ଚାଏତ ବୋର୍ଡ଼ର କାଗଜପତ୍ରକୁ ପୋଡ଼ି ପକା ହୋଇଥିଲା । ଖାସମାହାଲ ସବ୍ ମାନେଜରଙ୍କୁ ଗିରଫ କରି ୩ ଦିନ ପରେ ଖଲାସ କରି ଦିଆ-ହୋଇଥିଲା । ୭ଟି ପୋଷ୍ଟ ଅଫିସର ସମସ୍ତ ପୋଷ୍ଟକାର୍ଡ଼ ଓ ଲଫାଫାକୁ ପୋଡ଼ି ଦିଆ ହୋଇଥିଲା ଓ ଏହି ଥାନାର ସମସ୍ତ ଟେଲିଗ୍ରାଫ ଖୁଣ୍ଟକୁ ଓପାଡ଼ି ପକା ହୋଇଥିଲା । ୩ଟା କାଠ ପୋଲକୁ ଭାଙ୍ଗି ଦିଆ ହୋଇ ପ୍ରଧାନ ରାସ୍ତାକୁ ୨୦ଟା ଜାଗାରେ କାଟି ଦିଆ ହୋଇଥିଲା । ସରକାରୀ ଅଫିସରମାନଙ୍କ ପାଇଁ ୫ ହଜାର ଟଙ୍କାର କେରୋସିନ ଓ ୯ ହଜାର ଟଙ୍କା ମୂଲ୍ୟର ଅଟା, ଚିନି ଓ ଘିଅ ପ୍ରଭୃତି ବୋହିଁ ନେଇ ହୋଇ ଯାଉଥିବା ଗୋଟିଏ ବୋଟକୁ ସମ୍ପୂର୍ଣ୍ଣ ରୂପେ ପୋଡ଼ି ଦିଆ ହୋଇଥିଲା । ଏହି ଖେଜୁରି ସର୍କଲ ଅଫିସରଙ୍କୁ ୧୧ ଜଣ କନେଷ୍ଟବଲଙ୍କ ସହ ପଠାଇ ଦିଆ ହୋଇଥିଲା ମାତ୍ର ସେମାନଙ୍କୁ ବାଟରେ ଗିରଫ କରି ନିଆ ହୋଇ ୧୦ ଦିନ ପରେ ଖଲାସ କରି ଦିଆ ହୋଇଥିଲା । ସେପ୍ଟେମ୍ବର ୨୯ ତାରିଖ ଦିନ ପ୍ରାୟ ୨୦ ହଜାର ଲୋକ ଭଗବାନପୁର ପୋଲିସ ଷ୍ଟେସନ ଚାରିଆଡ଼େ ଜଙ୍ଗଲମାନ ରହି ଯାଇଥିଲେ । ଲୋକମାନେ ଥାନା

ନିକଟରେ ପହଞ୍ଚିଲାକ୍ଷଣି କଣ୍ଟାଇ ଖାସମାହାଲ୍ ଓ ସେଟେଣ୍ଟ ଅଫିସର ଶୋଭ୍ରାଯାବାବାଗୁଙ୍କ ଉପରେ ଗୁଳି ଚଳେଇ ଥିଲେ ଫଳରେ ସଙ୍ଗେ ସଙ୍ଗେ ୧୬ ଜଣ ପ୍ରାଣ ହରାଇଥିଲେ, ୯୦ ଜଣ ଆହତ ହୋଇଥିଲେ । ଅକ୍ଟୋବର ପହିଲା ଦିନ ଏହି ଥାନାର ୫ଟି ପୋଷ୍ଟ ଅଫିସ, ଗୋଟିଏ ଟେଲିଗ୍ରାଫ ଅଫିସ, ସବ୍‌ରେଜିଷ୍ଟ୍ରି ଅଫିସ, ହୋଟ ଅଫିସ, ଓ ୨ଟା ଡାକ ବଙ୍ଗଳାକୁ ପୋଡ଼ି ଦିଆ ହୋଇଥିଲା ।

ଅଗଷ୍ଟ ୨୬ ତାରିଖଠାରୁ ୨୯ ତାରିଖ ଭିତରେ କଣ୍ଟାଇର ବିଭିନ୍ନ ପ୍ରଧାନ ପ୍ରଧାନ ରାସ୍ତାକୁ ଅନେକ ସ୍ଥାନରେ କାଟି ଦିଆ ହୋଇ ପୋଲକୁ ଭାଙ୍ଗି ଦିଆ ହୋଇଥିଲା । ଉପକୂଳବର୍ତ୍ତୀ ବୋଟ ଗୁଡ଼ିକୁ ମଧ୍ୟ ନଷ୍ଟ କରି ଦିଆ ହୋଇଥିଲା ଫଳରେ କଣ୍ଟାଇ, ଭଗବାନପୁର, କଣ୍ଟାଇ ଖେଜୁରୀ ଓ କଣ୍ଟାଇ ଏଗ୍ରାର ସମସ୍ତ ଯାତାୟାତ ପଥ ଏକାବେଳକେ ବନ୍ଦ ହୋଇଥିଲା ।

ସମଗ୍ର ସବ୍‌ଡିଭିଜନରେ କର୍ତ୍ତୃପକ୍ଷ ଅଭୂତପୂର୍ବ ଦମନ ଲୀଳା ଚଳାଇଥିଲେ । କାର୍ଯ୍ୟତଃ ସମଗ୍ର ସବ୍‌ଡିଭିଜନ ଅଧିବାସୀ ସାମରିକ ଶାସନାଧୀନରେ ରହୁଥିଲେ । କଣ୍ଟାଇ ଯାଇଥିବା ପ୍ରଧାନ ଜିଲ୍ଲା ବୋର୍ଡ ରାସ୍ତାକୁ ସେପ୍‌ଟେମ୍ବର ୨୮ ତାରିଖ ଠାରୁ ସାମରିକ କର୍ତ୍ତୃତ୍ୱାଧୀନରେ ରଖାଯାଇଥିଲା ଓ ସାମରିକ ମଟରମାନ ତହିଁରେ ଅନବରତ ଯିବା ଆସିବା କରୁଥିଲେ । ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଟେଲିଗ୍ରାଫ୍ ଓ ଟେଲିଫୋନ ତାର ଓ ରାସ୍ତା ନ କାଟିବାକୁ ଛପା ଆଦେଶ ପତ୍ରମାନ ବାଣ୍ଟିଥିଲେ ମଧ୍ୟ ଲୋକମାନେ ତାକୁ ଖାତିର ନ କରି ରାସ୍ତା ଓ ଟେଲିଗ୍ରାଫ ତାର ଅନେକ ସ୍ଥାନରେ କାଟି ଥିଲେ । ସେ ପୁଣି ଏକ ଆଦେଶ ଜାରି

କରିଥିଲେ ଯେ ସରକାରୀ ଅଫିସର ଓ ଇଉନିଅନ୍ ବୋର୍ଡ଼ କର୍ମଚାରୀଙ୍କ ଛଡ଼ା ସନ୍ଧ୍ୟା ହେଲେ କେହୁ ଘରରୁ ବାହାରି ପାରିବେ ନାହିଁ । ଚାରିରୁ ବେଶି ଲୋକ ଏକାଠି ହୋଇପାରିବେ ନାହିଁ । କଲ ମାଜି-ଷ୍ଟ୍ରେଟ କଣ୍ଟାଇ ବସ୍ ସିଣ୍ଡିକେଟ୍ ଅଧୀନରେ ଥିବା ସମସ୍ତ ମଟରକୁ ନେଇ ଯାଇ ଥିଲେ ଓ ଡାକଗାଡ଼ି ଛଡ଼ା ଅନ୍ୟ କୌଣସି ଗାଡ଼ି ଯିବା ଆସିବା ବନ୍ଦକରି ଦେଇ ଥିଲେ । ସବୁ ପୋଷ୍ଟ ଅଫିସରେ କଟକଣାମାନ ଜାରି ହୋଇଥିଲା ଯେ କଣ୍ଟାଇ ସବ୍‌ଡ଼ିଭିଜନର କୌଣସି ଚିଠିପତ୍ର ଯାଞ୍ଚ କରା ନ ଯାଇ ବାହାରକୁ ପଠାଯିବ ନାହିଁ । ଅକ୍‌ଟୋବର ପହିଲା ଠାରୁ ୫୦୦ ସୈନ୍ୟ ସମଗ୍ର ସବ୍‌ଡ଼ିଭିଜନକୁ ୧୨ଟା କେନ୍ଦ୍ରରେ ବାଣ୍ଟି ହୋଇ ରହିଥିଲେ । ଗୋଟାଏ ଉଡ଼ାଜାହାଜ ଉପରେ ଉଡ଼ି ପ୍ରତ୍ୟେକଦିନ ପହରା ଦେଉଥିଲା । ଏଗ୍ରାର ଖାର, ପଟାସପୁରର ଡେଗ୍ରାପଡ଼ା ଓ ବାଲିଗୋବିନ୍ଦପୁର ଗ୍ରାମରେ ଚଢ଼ାଉ କରି ପୋଲିସ ଓ ସୈନ୍ୟ ଲୋକଙ୍କ ଉପରେ ଗୁଳି ଚଳେଇ ଥିଲେ । ଲୋକଙ୍କୁ ଭୟଭୀତ କରାଇ ଦେବା ପାଇଁ କର୍ତ୍ତୃପକ୍ଷ ପୋଲିସ ଓ ସୈନ୍ୟଙ୍କ ସାହାଯ୍ୟରେ କଂଗ୍ରେସ ସ୍ୱେଚ୍ଛା-ସେବକ ତଥା ଅନେକ ନିରୀହ ଲୋକଙ୍କ ଘର ପୋଡ଼ି ଦେଇଥିଲେ ଓ ତେଣେ ଉଡ଼ାଜାହାଜ ଖୁବ୍ ତଳେ ତଳେ ଉଡ଼ି ଲୋକଙ୍କୁ ଭୟ ଦେଖାଇ ଥିଲେ ଯେ ଲୋକେ ଯେପରି ନିଆଁ ଲିଭାଇବାକୁ ନ ଆସନ୍ତି । ଫଳରେ ପୋଲିସ ଓ ସୈନ୍ୟମାନେ ଯୁଆଡ଼େ ଯାଉଥିଲେ ଲୋକମାନେ ସେ ଆଡ଼ୁ ଘରଦ୍ୱାରମାନ ଛାଡ଼ି ପଳାଇ ଯାଉଥିଲେ । ପୋଲିସ ବାଟରେ ଯାହାକୁ ପାଉଥିଲେ ନିର୍ମମ ଭାବରେ ପ୍ରହାର କରୁଥିଲେ । ଖାନତଲାସ ଓ ଘର ପୋଡ଼ି ଦେଲା-ବେଳେ ପୋଲିସ ଅନେକ ଧନୀ ଲୋକଙ୍କର ମୂଲ୍ୟବାନ ଅଳଙ୍କାର ଓ ଜିନିଷପତ୍ର ଲୁଟକରି ନେଇ ଯାଇଥିଲେ । ଦାୟିତ୍ୱପୂର୍ଣ୍ଣ

ସରକାରୀ ଅଫିସରଙ୍କ ଆଗରେ ଏ ସବୁ ହୋଇଥିଲା । ପୋଲିସଙ୍କ, ଲୁଟ ତରାଜରେ ଗୁଣ୍ଡା ଧରଣର ଲୋକମାନଙ୍କର ସାହାଯ୍ୟ ନିଆ ହୋଇଥିଲା । ପୋଲିସକୁ ସାହାଯ୍ୟ କରିବାକୁ ସ୍ଥାନୀୟ ମୁସଲମାନଙ୍କୁ କେତେବେଳେ ବା ଲାଞ୍ଚ ଦିଆ ହୋଇଥିବାର ଓ ସେମାନଙ୍କୁ ବାଧ୍ୟ କରାଯାଇ ଥିବାର ଅଭିଯୋଗ ହୋଇଛି । ଖେଜୁରୀ ଓ ପଟାସପୁରରେ ମୁସଲମାନମାନେ ସେମାନଙ୍କ ପଡ଼ୋଶୀ ହିନ୍ଦୁ ଭାଇଙ୍କ ଘର ଲୁଟ କରି ନେଇଥିଲେ । କଣ୍ଟାଇର ମହିଷଦା, ନଣ୍ଡଦାଲ, ଭୂଇଭଗଡ଼ ଓ କନାଇ ଦୀଘୀ ଏହି ସ୍ତ୍ରବେଟି ଗାଁବାସୀଙ୍କ ଉପରେ ଟ ୧୦,୦୦୦, ଭବନଗର ପ୍ରଭୃତି ୪ଟି ଗାଁବାସୀଙ୍କ ଉପରେ ଟ ୧୫,୦୦୦ ଓ ମିର୍ଜାପୁର ଉପରେ ଟ ୫୦୦୦ ସମୂହ ଜୋରିମାନା ହୋଇଥିଲା । ଅନେକ ସ୍କୁଲ ଓ କଲେଜକୁ ସରକାରୀ ସାହାଯ୍ୟ ବନ୍ଦ କରି ଦିଆ ହୋଇଥିଲା । ଅଭି ପୋଲିସ ଓ ସୈନ୍ୟ ଫଉଜ ଯେଉଁ ସବୁ ଅତ୍ୟାଚାର କରିବେ ତାର୍ଁ ଯେପରି କୌଣସି ଫଟୋ ନ ନିଆ ହୋଇ ପାରିବ ସେଥିପାଇଁ ଫଟୋ ବ୍ୟବସାୟୀମାନଙ୍କ ପାଖରୁ ସବୁ କାମେରା ଛଡ଼ାଇ ନିଆ ହୋଇଥିଲା । ଅଭି ଅଗଷ୍ଟ ବିପ୍ଳବ ପୂର୍ବରୁ ସରକାର ସମସ୍ତ ସାଇକଲ ଓ ଡଙ୍ଗାମାନ ଜବତ କରି ନେଇ ଥିବାରୁ ପୋଲିସ ଓ ସୈନ୍ୟମାନେ କେଉଁଠି କିପରି ଅତ୍ୟାଚାର କଲେ ଅନେକ ସମୟରେ ତାହା ଜାଣି ହେଲା ନାହିଁ । ଅନେକ ସମୟରେ ଗ୍ରାମର ବିଶିଷ୍ଟ ଲୋକଙ୍କୁ ବନ୍ଧୁକ ମୁନ ଦେଖାଇ ତାଙ୍କ ନାକ ତଳେ ଘଷିବା ପାଇଁ ବାଧ୍ୟ କରା ଯାଇଛି । ସମୟ ସମୟରେ ସମଗ୍ର ଗାଁ ବା ଗାଁର କେତେକ ଘର ଚାରିପଟ ଘେରାଉ କରି ସୈନ୍ୟମାନେ ପୁରୁଷମାନଙ୍କୁ ଗିରଫ କରି ନେଇ ସ୍ତ୍ରୀ ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲେ । ଏହି କାଳ ୨୩୮ ଜଣ ସ୍ତ୍ରୀ

ଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କରି ଯାଇଥିବାର ପ୍ରମାଣ ମିଳିଛି । ଜଣେ ଜଣେ ସ୍ତ୍ରୀ ଲୋକଙ୍କ ଉପରେ ୩।୪ ଜଣ ଗୋରା ସୈନ୍ୟ ପାଶବିକ ଅତ୍ୟାଚାର କରିବାର ପ୍ରମାଣ ମଧ୍ୟ ମିଳିଛି । ସ୍ତ୍ରୀ ଲୋକମାନେ ସାମାନ୍ୟ ଟିକିଏ ପ୍ରତିରୋଧ କଲେ ସେମାନଙ୍କ ଉପରେ ନିଷ୍ଠୁର ପ୍ରହାର ହେଉଥିଲା । ମୋଟରେ ୧୨୬୦୦ ଜଣଙ୍କୁ ଗିରଫ କରି ଯାଇଥିଲା । ସେମାନଙ୍କ ଭିତରୁ ଅନେକଙ୍କୁ ନାନା ପ୍ରକାର ଜେରା କରିଯାଇ ଛାଡ଼ିଦିଆ ହୋଇଥିଲା ।

# ଅଗଷ୍ଟ ବିପ୍ଳବରେ କେରଳର ଅଗ୍ନି ପରୀକ୍ଷା

ଏହି କେରଳରେ ଜନ୍ମ ଗ୍ରହଣ କରି ଜଗତ୍‌ବିଖ୍ୟାତ ଶଙ୍କରାଚାର୍ଯ୍ୟ ଆଧ୍ୟାତ୍ମିକ ଜଗତରେ ଦିନେ ବିପ୍ଳବ ସୃଷ୍ଟି କରିଥିଲେ । ଶଙ୍କରଙ୍କ ଜନ୍ମଭୂମି କେରଳ ଭାରତର ତଥା ବିଶ୍ୱର ଆଧ୍ୟାତ୍ମିକ ଚିନ୍ତାଧାରାକୁ ଯେପରି ସ୍ପର୍ଶ କରିଥିଲା ସ୍ୱାଧୀନତା ସଂଗ୍ରାମକୁ କେରଳ ସେହିପରି ବଳିଷ୍ଠ କରିଛି । ୧୯୨୧ ରେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଓ ଖିଲାଫତ ଆନ୍ଦୋଳନ ଚାଲିଥିବା ବେଳେ ଏହି କେରଳରେ ବିଖ୍ୟାତ ମୋପଲା ବିଦ୍ରୋହ ସମଗ୍ର ବ୍ରିଟିଶ ସାମ୍ରାଜ୍ୟକୁ ଥରହର କରି ଦେଇଥିଲା । ଏହି ମୋପଲା ବିଦ୍ରୋହ ଫଳରେ ମାଲବାର ଜିଲ୍ଲାର ସମଗ୍ର ଦକ୍ଷିଣଭାଗ ବିଦ୍ରୋହୀମାନଙ୍କ କର୍ତ୍ତୃତ୍ୱରେ ରହିଥିଲା ଏବଂ ବ୍ରିଟିଶ ଶାସନ ଲୋପ ପାଇ ଯାଇଥିଲା । ମୋପଲାମାନେ ନିଜେ ନିଜେ ସରକାର ଗଠନ କରି ମୁସଲମାନ ଜନସାଧାରଣଙ୍କ ଭିତରେ ବିଦ୍ରୋହ ଭାବକୁ ଜାଗରୁକ କରି ରଖିଥିଲେ । ୧୯୪୨ ଅଗଷ୍ଟରେ ବ୍ରିଟିଶ ସରକାର କେରଳର ଅଦ୍ୱିତୀୟ ନେତା କେଲାପନଙ୍କୁ ଗିରଫ କରି କେରଳର ଜନତାକୁ ଯୁଦ୍ଧ ଅହ୍ୱାନ ଦେଇଥିଲେ । କେରଳର

ଜନତା ଏହି ସଂଗ୍ରାମରେ ଯେଉଁ ଜବାବ ଦେଇଥିଲି ତାହା ଆଜି ଇତିହାସର ବସ୍ତୁ । ଶ୍ରୀ କେଲପନଙ୍କୁ ଗିରଫ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ନେତାମାନଙ୍କୁ ମଧ୍ୟ ଗିରଫ କରି ନିଆ ଯାଇ ଥିଲି । ଏହି ଗିରଫର ପ୍ରତିବାଦରେ ପ୍ରଥମେ କେରଳର ଛାତ୍ର-ମାନେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଧର୍ମଘଟ ଆରମ୍ଭ କରି ଦେଇ ଥିଲେ । ପ୍ରଦେଶର ସ୍କୁଲ୍ ଓ କଲେଜମାନଙ୍କରେ ଛାତ୍ରମାନେ ଯୋଗ ନ ଦେବାରୁ ସ୍କୁଲ୍ କଲେଜ ଅନେକ ଦିନ ପର୍ଯ୍ୟନ୍ତ ବନ୍ଦ କରି ଦିଆ ହୋଇଥିଲି । ଛାତ୍ରମାନେ ବିରାଟ ଶୋଭାଯାତ୍ରାମାନଙ୍କରେ ସହରର ସମସ୍ତ ଗଳିରେ ବୁଲି ଅଗଷ୍ଟ ବିପ୍ଳବର ବାଣୀ ପ୍ରଚାର କରିଥିଲେ । ତାପରେ ଜନସାଧାରଣଙ୍କ ଭିତରେ ବିପ୍ଳବର ଭାବ ଖେଳିଗଲି । ଉତ୍ତର ମାଲବାରର ଚେମନଚେଶ୍ୱରେ ଜନତା ଉତ୍ତେଜିତ ହୋଇ ରେଳବାଇ ଷ୍ଟେସନ ଓ ସବ୍ରେଜିଷ୍ଟ୍ରି ଅଫିସକୁ ପୋଡ଼ି ପକାଇଥିଲେ । କଲିଏରିଠାରେ ଗୋଟାଏ ପୋଲ୍ ଭାଙ୍ଗି ଦିଆ ହୋଇଥିଲି । ବିଭିନ୍ନ ସ୍ଥାନରେ କେତେକ ମୁନସିଫ୍ କୋର୍ଟ, ସବ୍କୋର୍ଟ, ସବ୍ରେଜିଷ୍ଟ୍ରାର କୋର୍ଟ ଓ ସରକାରୀ ମାଛ କାରଖାନା ପ୍ରଭୃତି ଦେଶୀ ବୋମାରେ ଓ ଅନ୍ୟ ଭାବରେ ପୋଡ଼ି ଦିଆ ହୋଇଥିଲି । ଏର୍ଣ୍ଣାକୁଲମଠାରେ ଯେଉଁ ମଞ୍ଚ ଲାଟ ବକ୍ତୃତା ଦେବା ପାଇଁ ତିଆରି ହୋଇଥିଲି, ଲାଟ ପହଞ୍ଚିବା ପୂର୍ବରୁ ସେହି ମଞ୍ଚାକୁ ପୋଡ଼ି ଦିଆ ହୋଇଥିଲା । ଏହି ସବୁ ଗୁପ୍ତ ଆନ୍ଦୋଳନ ଚଳାଉ ଥିବା ସନ୍ଦେହରେ କେତେକ ବିଶିଷ୍ଟ କଂଗ୍ରେସ ନେତାଙ୍କୁ ଗିରଫ କରି ନେଇ ପୋଲିସ କର୍ତ୍ତୃପକ୍ଷ ସେମାନଙ୍କ ନାମରେ ଏକ ଷଡ଼ଯନ୍ତ୍ର ମକଦ୍ଦମା ଚଳେଇଥିଲେ । ଏହି ଟେଲିଚେଶ୍ୱ ଷଡ଼ଯନ୍ତ୍ର ମକଦ୍ଦମାର ଅସାମୀମାନଙ୍କୁ ଟେଲିଗ୍ରାମ ଓ ଟେଲିଫୋନ ତାର କାଟିବା ଓ ବୋମା ତିଆରି କରିବା

ଅଭିଯୋଗରେ ବିଚାର କରାଯାଇଥିଲା । ବିଚାର ପରେ ଶ୍ରୀବଲନଙ୍କୁ ୧୦ ବର୍ଷ ଓ ଅନ୍ୟ ୫ ଜଣଙ୍କୁ ସାତବର୍ଷ ଲେଖାଏଁ ଜେଲ୍ ଦଣ୍ଡ ଆଦେଶ ହୋଇଥିଲା । ଶତ ଶତ ଲୋକ ଶାନ୍ତିପୂର୍ଣ୍ଣ ତଥା ପୋଡ଼ା ପୋଡ଼ ଭାବ କରି ଜେଲ୍ ବରଣ କରିଥିଲେ ।

କେରଳର ଲୋକ ଓ ଜନସାଧାରଣଙ୍କୁ ଦୁଇଟି କ୍ଷେତ୍ରରେ ଲଢେଇ କରିବାକୁ ହୋଇଥିଲା । ବ୍ରିଟିଶ ସରକାର ଓ କମ୍ୟୁନିଷ୍ଟ ଏହି ଉଭୟଙ୍କ ବିରୁଦ୍ଧରେ ସେମାନେ ଯୁଦ୍ଧ କରିଥିଲେ । ମାଲବାରର ଉତ୍ତରଭାଗରେ କମ୍ୟୁନିଷ୍ଟମାନଙ୍କର ବିଶେଷ ପ୍ରଭାବ ଥିଲା । କେରଳରେ ଅଗଷ୍ଟ ସଂଗ୍ରାମର ଏକ ପରୋକ୍ଷ ଫଳ ହେଲା ଯେ କମ୍ୟୁନିଷ୍ଟମାନେ ଜନସାଧାରଣଙ୍କଠାରୁ ପୁରାପୁରି ବିଚ୍ଛିନ୍ନ ହୋଇଗଲେ । ଆନ୍ଦୋଳନ ଆରମ୍ଭବେଳେ କମ୍ୟୁନିଷ୍ଟ ଦଳରୁ ଶତ ଶତ ସଂଖ୍ୟାରେ କମ୍ୟୁନିଷ୍ଟ ସଭ୍ୟମାନେ ଆସି ଜାତୀୟବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ଆଗେ ଯେଉଁଠି କମ୍ୟୁନିଷ୍ଟଙ୍କ ପ୍ରତିପତ୍ତି ଥିଲା ତାହା ଜାତୀୟବାଦୀ ଦୁର୍ଗରେ ପରିଣତ ହୋଇଗଲା । ଡାଃ ମେନନ୍ ପ୍ରମୁଖ ବମ୍ବେରୁ ଆସି ପହଞ୍ଚିବା ପରେ ଆନ୍ଦୋଳନ ଅଧିକ ଜୋରସୋରରେ ଚାଲିଲା ଏବଂ ଏମାନଙ୍କ ବିରୁଦ୍ଧରେ କୀଜାରିପୁର ବୋମା ମକଦ୍ଦମା ସରକାର ଚଳେଇଥିଲେ । ଏହି ମକଦ୍ଦମାରେ ଡାଃ ମେନନ୍ ପ୍ରମୁଖ ୧୦ । ୧୨ ଜଣଙ୍କୁ ୭ ବର୍ଷଠୁ ଆରମ୍ଭ କରି ୧୦ ବର୍ଷ ପର୍ଯ୍ୟନ୍ତ ଜେଲଦଣ୍ଡ ହୋଇଥିଲା । ସେମାନେ ଆଜି ମଧ୍ୟ କୁଖ୍ୟାତ ଥଲପୁରମ୍ ଜେଲ୍‌ରେ ଅଛନ୍ତି । ମାଧାର ମଞ୍ଜୁରନ୍, କୁନିରମନ୍‌କଦାବ ଓ ସଦାନନ୍ଦନ ଏ ପର୍ଯ୍ୟନ୍ତ ପୋଲିସର ଦୃଷ୍ଟି ଅନ୍ତରାଳରେ ରହିଛନ୍ତି । 'ସ୍ୱତନ୍ତ୍ର ଭାରତ' ନାମରେ

ଏକ ସାପ୍ତାହିକ ପତ୍ରିକା ମାଲୟାଲମ୍ ଭାଷାରେ ଛପା ହୋଇ ସମଗ୍ର ପ୍ରଦେଶକୁ ବିପ୍ଳବର ବାର୍ତ୍ତା ବହନ କରି ନେଇଥିଲା । କେରଳ ପ୍ରଦେଶର ୧୯ ବର୍ଷର ଗୁରୁବାୟୁର କଲେଜ ଛାତ୍ର ନବୀନଚନ୍ଦ୍ର ଗୁପ୍ତ ପ୍ରଥମ ସହିଦ୍ । ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇ ସେ କାରା ବରଣ କରିଥିଲେ । ତାଙ୍କ ଉପରେ ଯେଉଁ ୭୫ ଟଙ୍କା ଜୋରିମାନା ହୋଇଥିଲା ତାକୁ ନ ଦେବା ପାଇଁ ସେ ତାଙ୍କ ମାଙ୍କୁ ଅନୁରୋଧ କରି କହିଥିଲେ ଯେ ଜୋରିମାନା ଦେଇଦେଲେ ସେ ଆଉ ଜୀବିତ ଅବସ୍ଥାରେ ତାଙ୍କୁ ଦେଖିବେ ନାହିଁ । ତାଙ୍କ ମା ତାହ ବାଦ ଜୋରିମାନା ଟଙ୍କା ଫେରାଇ ନେଇ ଚାଲି ଯାଇଥିଲେ । ଏହି ଛାତ୍ରଟି ଜେଲରେ ରହିଥିବା ଅବସ୍ଥାରେ ଜେଲ ଖାଦ୍ୟ ତାଙ୍କ ରୁଚିକର ହେଲା ନାହିଁ ଓ ଶେଷରେ ଟାଇଫଏଡ଼ରେ ପୀଡ଼ିତ ହୋଇ ହାସପାତାଲରେ ଜୀବନ ହରାଇଲେ । ଅନ୍ୟ ମଧ୍ୟ ଶ୍ରୀ ଏଲ୍, ପି, ପ୍ରଭୁ ଓ ଶ୍ରୀ ଶଙ୍କର ମେନନ୍ ଜେଲରୁ ଖଲାସ ହେବାର ଅଳ୍ପ-ଦିନ ପରେ ଜୀବନ ହରାଇଥିଲେ । ଶିକାରିଜର ବୋମା ମକଦ୍ଦମାର କେ; କୁନ୍ନିରାମ ଓ କୋଟି ମେନନ୍ ଆଲିପୁର ଜେଲରେ ଜୀବନ ହରାଇଛନ୍ତି । ଏ ଦୁଇଜଣ ନୂଆ ହୋଇ କଂଗ୍ରେସରେ ଯୋଗ ଦେଇଥିଲେ ଓ ଦୁଇଜଣଯାକ ଖୁବ୍ ଉତ୍ସାହୀ କର୍ମୀ ଥିଲେ । ଶ୍ରୀ କେ, କୁନ୍ନିରାମ ଆଗେ କମ୍ୟୁନିଷ୍ଟ ଦଳରେ ଥିଲେ ଓ କୋଟି ମେନନ୍ ଜଣେ ବିଖ୍ୟାତ ଜମିଦାର ପରିବାରର ସନ୍ତାନ ।

# ଆନ୍ଧ୍ରଦେଶରେ ପ୍ରକୃତ ଜନଯୁଦ୍ଧ

ଅକ୍ଟୋ ବିପ୍ଳବ ଅନ୍ଧ୍ରରେ ପ୍ରକୃତ ଜନଯୁଦ୍ଧରେ ପରିଣତ ହୋଇଥିଲା ବୋଲି ସରକାର ମଧ୍ୟ ସ୍ୱୀକାର କରିଛନ୍ତି । ୧୯୪୨ ଅଗଷ୍ଟ ୯ ତାରିଖ ପରେ ସମଗ୍ର ଅନ୍ଧ୍ରର ଜନସାଧାରଣ ବିଦ୍ରୋହୀ ହୋଇ ଉଠିଥିଲେ ଓ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରକୃତ ଜନଯୁଦ୍ଧ ଘୋଷଣା କରିଥିଲେ । ଅନେକ ଦିନ ପର୍ଯ୍ୟନ୍ତ ଅନ୍ଧ୍ରର କେତେକ ସ୍ଥାନରେ ବ୍ରିଟିଶ ଶାସନର ସତ୍ତା ଲୋପ ପାଇଗଲା ଭଳି ଜଣା ପଡ଼ୁଥିଲା ଓ ଜନସାଧାରଣ ନିଜ ହାତରେ ଶାସନ ଚଳେଇ ଥିଲେ । ତିନିମାସ ପର୍ଯ୍ୟନ୍ତ ଅନ୍ଧ୍ରର ଗୁରିଅଡ଼େ ଆନ୍ଦୋଳନ ଜୋରସୋରରେ ଲାଗି ରହିଥିଲା । ବଜାରରେ ହରତାଳ ଲୁଟ ଧର୍ମଘଟ ଲୁଟ ଶୋଭାଯାତ୍ରା ଓ ସଭା ଏକପ୍ରକାର ଦୈନନ୍ଦିନ ଘଟଣା ଭଳି ହୋଇ ଯାଇଥିଲା । ଯୁଦ୍ଧ ଉଦ୍ୟମରେ ବାଧା ଜନ୍ମାଇବାକୁ ଏମ୍, ଏସ୍, ଏମ, ରେଲ୍‌ଲାଇନକୁ ଅନେକ ସ୍ଥାନରେ କାଟି ଦିଆ ହୋଇଥିଲା । କିନ୍ତୁ ଅନେକ ସ୍ଥାନରେ ପ୍ରକାଶ୍ୟ ଭାବରେ ରେଲ୍‌ଲାଇନ ଉଠାଇ ଦିଆ ହୋଇଥିଲା । ଅଥଚ କୌଣସି ସରକାରୀ ବା ରେଲ୍‌ବାଇ ଅଫିସରଙ୍କ ଉପରେ ଆକ୍ରମଣ ହୋଇଥିବାର କୌଣସି ପ୍ରମାଣ ନାହିଁ । ବେଜଓ୍ୱାଡ଼ା ଓ ଅନ୍ୟାନ୍ୟ ସ୍ଥାନରେ ରେଲ୍ ଲାଇନ ଜଗି ରହିବା ପାଇଁ ସୈନ୍ୟ ପଠେଇବାକୁ ପଡ଼ିଥିଲା । ଗୁଣ୍ଟୁର ଓ ମସଲିପଟମରେ ଟେଲିଗ୍ରାଫ୍ ତାର କାଟି ଦିଆ ହୋଇଥିଲା । କର୍ତ୍ତୃପକ୍ଷ ତାପରେ ଯେତେ ଦମନନୀତି ଚଳେଇଲେ ତା ଫଳରେ ଜନସାଧାରଣ ଉତ୍ତ୍ୟକ୍ତ ହୋଇ ଉଠିଥିଲେ ଓ ସରକାରୀ ଅଫିସ, ରେଲ-ଷ୍ଟେସନ ଉପରେ ଆକ୍ରମଣ କରିଥିଲେ । ପଶ୍ଚିମ ଗୋଦାବରୀର

ସ୍ରୀମବରମ ଅନ୍ଧ୍ରଦେଶର ଶମ୍ଭୁର ଭଳି ହୋଇଥିଲା । ଭୀମବରମ୍‌ରେ ୭୦ ଜଣଙ୍କୁ ବୋମା ବିସ୍ଫୋରଣ ସମ୍ପର୍କରେ ଅଭିଯୁକ୍ତ କରି ଯାଇଥିଲା ଓ ୧୭ ଜଣଙ୍କୁ ମୃତ୍ୟୁଦଣ୍ଡ ଆଦେଶ ହୋଇଥିଲା । ଗୁଣ୍ଟୁର, ଢେଙ୍କାନାଳ ଓ ଭାଇଜାଗ ପ୍ରଭୃତିରେ ସେହିଭଳି ଅନେକ ଦିନ ପର୍ଯ୍ୟନ୍ତ ଗୋଟାଏ ଆତଙ୍କର ରାଜତ୍ୱ ଚାଲିଥିଲା ।

ଅଗଷ୍ଟ ବିପ୍ଳବର ଇତିହାସରେ ତେନାଲିର ନାମ ଅମର ହୋଇ ରହିବ । ତେନାଲି ଗୁଣ୍ଟୁର ଜିଲାର ଏକ ପ୍ରଧାନ ସ୍ଥାନ । ଗୁଣ୍ଟୁର ସ୍ୱାଧୀନତା ସଂଗ୍ରାମରେ ସବୁବେଳେ ଆଗୁଆ ହୋଇ ବାହାରିଛି ଓ ଅସୀମ ତ୍ୟାଗ ସ୍ୱୀକାର କରିଛି । କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ସରକାରର ଅବମୃଶ୍ୟକାରୀ କାର୍ଯ୍ୟର ପ୍ରତିବାଦ କରି ତେନାଲିର ଛାତ୍ରମାନେ ଅଗଷ୍ଟ ତା ୧୨ ରିଖ ଦିନ ଧର୍ମଘଟ ଘୋଷଣା କରିଥିଲେ । ଅଳ୍ପ ସଂଖ୍ୟକ ଛାତ୍ର ନାନା ପ୍ରକାର ଧ୍ୱନି କରି ସହରର ବିଭିନ୍ନ ରାସ୍ତାରେ ବୁଲିସାରି ରେଲ ଷ୍ଟେସନରେ ପହଞ୍ଚିଥିଲେ । ସମଗ୍ର ରେଲଷ୍ଟେସନଟି ସେହି ଛାତ୍ର ଓ ଯୁବକମାନେ ଦଖଲ କରି ନେଇଥିଲେ । ଷ୍ଟେସନରେ ଥିବା ରେଲବାଇ କର୍ମଚାରୀମାନଙ୍କୁ ସେଠାରୁ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦିଆ ହୋଇଥିଲା ଓ ସେମାନେ ସଙ୍ଗେ ସଙ୍ଗେ ଛାଡ଼ି ଚାଲି ଯାଇଥିଲେ । ପୋଲିସମାନଙ୍କ ପଗଡ଼ି କାଢ଼ି-ରଖି ସେମାନଙ୍କୁ ବିଦାୟ କରି ଦିଆ ହୋଇଥିଲା । କେହି ଆପତ୍ତି କରିବାକୁ ମଧ୍ୟ ନ ଥିଲେ । ସେଠାରେ ଯାହା କିଛି ଦରକାରୀ କାଗଜ ଥିଲା ତାକୁ ସବୁ ନଷ୍ଟ କରି ଦିଆ ହୋଇଥିଲା । ମାତ୍ର ଏହି ସମୟରେ ଜିଲା ମାଜିଷ୍ଟ୍ରେଟଙ୍କ ନିକଟକୁ କୌଣସି ମତେ ସଂବାଦ ପଠା ଯିବାରୁ ନିଜେ ମାଜିଷ୍ଟ୍ରେଟ୍

ଦଳେ ସଶସ୍ତ୍ର ପୋଲିସଙ୍କ ସହ ସେଠାରେ ଆସି ପହଞ୍ଚିଲେ । ଜଳ୍ପ ମାଜିଷ୍ଟ୍ରେଟ୍ ସମବେତ ଜନତାଙ୍କୁ ସେଠାରୁ ଚାଲିଯିବା ପାଇଁ ଆଦେଶ ଦେଲେ ଏବଂ ଲୋକମାନେ ନ ଗଲେ ଗୁଳି ଚଳେଇବେ ବୋଲି ଧମକ ଦେଲେ । ମାତ୍ର ସମବେତ ଜନତା ଯିବେ ନାହିଁ ବୋଲି ସାହସର ସହିତ ମନା କରି ଦେଲେ । ତା ପରେ ମାଜିଷ୍ଟ୍ରେଟ୍ ଗୁଳି ଚଳେଇବାକୁ ଆଦେଶ ଦେଲେ । ସମସ୍ତେ ହସି ହସି ଗୁଳି ମାଡ଼ର ସମ୍ମୁଖୀନ ହେଲେ । ସଙ୍ଗେ ସଙ୍ଗେ ଗୁଳିମାଡ଼ରେ ୫ଜଣ ମରିଗଲେ, ଦୁଇଜଣ ପରେ ମଲେ ଓ ୫ଜଣ ଗୁରୁତର ଭାବରେ ଆହତ ହୋଇଥିଲେ । ଏହି ମୃତବ୍ୟକ୍ତିଙ୍କ ଭିତରୁ ଜଣେ ସ୍ଥାନୀୟ ଆଡ଼୍‌ଭୋକେଟ୍ ଥିଲେ । ସେ ମାଜିଷ୍ଟ୍ରେଟ୍‌ଙ୍କ ସଙ୍ଗେ କଥାବାର୍ତ୍ତା କରି ସାରି ଲୋକଙ୍କୁ ବୁଝେଇ ସୁଝେଇ ବିଦା କରି ଦେବାକୁ ସେଠାକୁ ଯାଇଥିଲେ ।

ଏହି ଘଟଣା ପରେ ଅନେକ ଦିନ ପର୍ଯ୍ୟନ୍ତ ସୈନ୍ୟମାନଙ୍କୁ ଆଣି ସେଠାରେ ରଖା ଯାଇଥିଲା । ସେହି ସୈନ୍ୟମାନେ ପିସ୍ତଲ-ସହ ଲୋକଙ୍କୁ ଡରେଇବା ପାଇ ସହର ଭିତରକୁ ଯାଉଥିଲେ । ପୋଲିସ ଓ ସୈନ୍ୟ ଫଉଜ ଏହି ଘଟଣା ପାଇଁ ଲୋକମାନଙ୍କୁ ବହୁତ ହଇରାଣ କରିଥିଲେ ଓ ଦୁଇଲକ୍ଷ ଟଙ୍କା ସମୁହ ଜୋରିମାନା ହୋଇଥିଲା । ଭାରତର ଅନ୍ୟ କୌଣସି ଗୋଟିଏ ସ୍ଥାନ ଉପରେ ଏତେ ଜୋରିମାନା ହୋଇନାହିଁ । ଏହି ଜୋରିମାନା ଆଦାୟ କରିବା ସକାଶେ ଲୋକମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର ଓ ଜୁଲମ କରିଯାଉଥିଲା ।

ଅଗଷ୍ଟ ବିପ୍ଳବରେ ସମଗ୍ର ଅନ୍ଧ୍ରଦେଶରେ ୨୧ଜଣ,ପୋଲିସର ଗୁଳିଚାଳନାରେ ଜୀବନ ହରାଇଛନ୍ତି, ଯେଉଁଥିଭିତରୁ ଚୁଣ୍ଟୁରରେ

୭ଜଣ, ଢେଙ୍କାନାଳରେ ୧ଜଣ ଓ ଭୁମବରମରେ ୫ ଜଣ, ୧୩୭ ଜଣଙ୍କୁ ବେତ ମାଡ଼ ଦିଆ ହୋଇଥିଲା । ଏମାନଙ୍କୁ ପାହାରଠାରୁ ଆରମ୍ଭ କରି ୪୭ ପାହାର ପର୍ଯ୍ୟନ୍ତ ମାଡ଼ ହୋଇଥିଲା । ୧୧ଟି ପ୍ରଧାନ ରେଲ ଷ୍ଟେସନକୁ ପୋଡ଼ି ଦିଆ ହୋଇଥିଲା ଓ ୭ଟା ସ୍ଥାନରେ ରେଲ୍ ଲାଇନ ଭାଙ୍ଗି ଦିଆ ହୋଇଥିଲା । ମାତ୍ର ଏହା ଫଳରେ କେହି ମୃତାହତ ହୋଇ ନାହାନ୍ତି । ମାନ୍ଦ୍ରାଜ ଓ ବେଙ୍ଗଲ ଓ ନଗର ଉଭୟରେ ୭ ଦିନ ଓ ନଅପୁର ଓ ଜାଦାଦୀରେ ଉଭୟରେ ୧୦ଦିନ ପର୍ଯ୍ୟନ୍ତ ରେଲ୍ ଯିବା ଆସିବା ବନ୍ଦ ହୋଇ ଯାଇଥିଲା । ମୋଟରେ ୮ଲକ୍ଷ ଟଙ୍କା ସମ୍ପତ୍ତି କ୍ଷୋଭମାନେ ଜୋର କରିଯାଇଥିଲା । ଏହି ଆନ୍ଦୋଳନରେ ସମଗ୍ର ପ୍ରଦେଶରେ ୧୦୦ ଜଣ ଗୁଳି ଚଳାଚଳି ଖାଇ ଦେଇଥିଲେ । ମୋଟରେ ୩୧୦ ଜଣ ଅଟକବନ୍ଦୀ ଓ ୧୭୦୦ ରାଜନୈତିକ ଅପରାଧରେ ଦଣ୍ଡ ପାଇଥିବା ରାଜବନ୍ଦୀ ହୋଇଥିଲେ ।

## ଅଗଷ୍ଟ ବିପ୍ଳବରେ ବିହାରର ଅଗ୍ନିପରୀକ୍ଷା

ସୀତାର, ବାଲିଆ, ମେଦିନୀପୁରର ବିପ୍ଳବ କାହାଣୀ ଯେତେବେଳେ ପ୍ରକାଶ ପାଇ ନ ଥିଲା ସେତେବେଳେ ବିପ୍ଳବୀ ନେତାମାନଙ୍କ ବୀରତ୍ୱ, ତ୍ୟାଗ, ଅପରାଜେୟ ପ୍ରତିରୋଧ ଶକ୍ତି ସେହି ସଙ୍କଟମୟ ଅଗଷ୍ଟ ବିପ୍ଳବ ବେଳେ ଭାରତର ବିପ୍ଳବୀମାନଙ୍କୁ ସାହସ ଓ ଶକ୍ତି ଦେଇଥିଲା । ବିହାରରେ 'ଭାରତ ଛାଡ଼' 'କର ବା ମର' ଉପାୟରେ ପୁରାପୁରି କାର୍ଯ୍ୟକାରୀ କରିବା ପାଇଁ ମୁଷ୍ଟିମେୟ କମ୍ୟୁନିଷ୍ଟଙ୍କ ଛଡ଼ା ବିହାରର ସମସ୍ତ ଦଳ ଓ ସମ୍ପ୍ରଦାୟ ଏକ ହୋଇ ଯାଇଥିଲେ । ବିହାରରେ କଂଗ୍ରେସ ମନ୍ତ୍ରୀଙ୍କ ରାଜତ୍ୱ ବେଳେ ତଥା ଯୁଦ୍ଧ ଆରମ୍ଭ ହେବା ପରେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଦଳ-

ମାନଙ୍କ ଭିତରେ ଦୁର୍ଭାଗ୍ୟକ୍ରମେ ଯେଉଁ ମତଭେଦ ରହି ଆସିଥିଲା 'କର ବା ମର' ଡାକରାରେ ସେ ମତଭେଦ ଲୁଆଣ୍ଡ଼ ଭଳି ଭାଙ୍ଗି ଯାଇଥିଲା ଓ କଂଗ୍ରେସର ବୈପ୍ଳବିକ ଆହ୍ୱାନର ଜବାବ ଦେବା ପାଇଁ ସମସ୍ତେ ଏକଜୁଟ ହୋଇ ଯାଇଥିଲେ । ଦକ୍ଷିଣ ପନ୍ଥୀ ଓ ବାମପନ୍ଥୀ-ମାନଙ୍କର ବିହାରର ଜନସାଧାରଣଙ୍କ ଉପରେ ଯେଉଁ ଗଭୀର ପ୍ରଭାବ ଥିଲା ତାକୁ ସେମାନେ ଏକମତ ଓ ଏକପ୍ରାଣରେ କାର୍ଯ୍ୟକାରୀ କରି ଅଗଷ୍ଟ ବିପ୍ଳବକୁ ସଫଳ କରିଥିଲେ । ବିହାରର ବିପ୍ଳବର ଇତିହାସହିଁ ଅଗଷ୍ଟ ବିପ୍ଳବର ଇତିହାସ ବୋଲି ଯେଉଁମାନେ କହୁଥାନ୍ତି ତାହା ବାସ୍ତବିକ ଅତିରଞ୍ଜିତ ନୁହେଁ । ସାତାରା, ବାଲିଆ ଓ ମେଦିନୀପୁରର ବିପ୍ଳବୀ ଜନସାଧାରଣଙ୍କ ଅପେକ୍ଷା ବିହାରବାସୀ ଅଧିକ ବୀରତ୍ୱ ଓ ସାହସିକତାର ପରିଚୟ ଦେଇଥିଲେ ମଧ୍ୟ ଓ ଅଧିକ ତ୍ୟାଗ ସ୍ୱୀକାର କରିଥିଲେ ମଧ୍ୟ ବିହାରବାସୀଙ୍କ ସେହି ତ୍ୟାଗ ଓ ବୀରତ୍ୱ ସମଗ୍ର ଭାରତରେ ଯଥେଷ୍ଟ ପ୍ରଚାର ହୋଇ ପାରି ନାହିଁ । ବିହାରର ମୁକୁଟହୀନ ସମ୍ରାଟ ଡ଼ାଃ ରାଜେନ୍ଦ୍ରପ୍ରସାଦ ମୁକ୍ତ ହୋଇ ସମଗ୍ର ବିହାର ଗସ୍ତ କରିବା ଭିତରେ ଅନେକ କଥା ପ୍ରକାଶ ପାଇଛି । ଅଗଷ୍ଟ ପ୍ରସ୍ତାବ ଗୃହୀତ ହେବା ପୂର୍ବରୁ ମଧ୍ୟ ଡ଼ାଃ ପ୍ରସାଦ ବିହାରର ଅନେକ ସ୍ଥାନରେ ଗସ୍ତ କରି ବିପ୍ଳବର ବାଣୀ ପ୍ରଚାର କରିଥିଲେ ଓ କଂଗ୍ରେସର ସଂଗ୍ରାମର ଆହ୍ୱାନ ପାଇଁ ଅପେକ୍ଷା କରି ରହିବାକୁ ନିବେଦନ କରିଥିଲେ । ନିଖିଳ ଭାରତ କଂଗ୍ରେସ କମିଟିର ବିଶ୍ୱବିଖ୍ୟାତ ବମ୍ବେ ଅଧିବେଶନରେ ଡାଃ ରାଜେନ୍ଦ୍ରପ୍ରସାଦ ଯୋଗ ଦେଇ ପାରି ନ ଥିଲେ । ଅଗଷ୍ଟ ୯ ତାରିଖ ଦିନ ସକାଳେ ମହାତ୍ମା ଗାନ୍ଧି ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ତଥା ଅନ୍ୟ ନେତାମାନଙ୍କୁ ବମ୍ବେରେ ଗିରଫକରି ନିଆ ହେବା ସଙ୍ଗେ ସଙ୍ଗେ ଡାଃ ରାଜେନ୍ଦ୍ରପ୍ରସାଦଙ୍କୁ ପାଟନାଠାରେ ଗିରଫକରି ନିଆ ହୋଇଥିଲା ସଙ୍ଗେ

ଘଟଣା ବିହାରର ସବୁଆଡ଼େ ଘୋର ଚାଞ୍ଚଲ୍ୟ ଖେଳିଗଲା ଓ ପ୍ରତିବାଦ ପ୍ରକାଶ ପାଇଲା । ଭାରତର ଅନ୍ୟାନ୍ୟ ସହର ଭଳି ପାଟନାର ଛାତ୍ରମାନେ ପ୍ରଥମେ ଏହାର ପ୍ରତିବାଦ କରି ବିପ୍ଳବର ଭିତ୍ତି ଦେଲେ । ଅଗଷ୍ଟ ୯ ତାରିଖ ଦିନ ଛାତ୍ରମାନଙ୍କ ନେତୃତ୍ୱରେ ୫୦ ହଜାର ବିପ୍ଳବୀ ଜନତାଙ୍କର ଏକ ବିରାଟ ଶୋଭାଯାତ୍ରା ପାଟନା ସହରରେ ମାର୍ଚ୍ଚ କରି ଯାଇ ସେକ୍ରେଟେରିଏଟ୍‌ରେ ପହଞ୍ଚିଲେ ଓ ସେଠାରେ ବକ୍ତୃତା ଓ ସ୍ଲୋଗାନମାନ ଦେଇ ଶାନ୍ତିପୂର୍ଣ୍ଣ ଭାବରେ ସେଦିନ ଫେରି ଆସିଥିଲେ । ଅଗଷ୍ଟ ୧୧ ତାରିଖ ବିହାରର ତଥା ଭାରତର ଏକ ସ୍ମରଣୀୟ ଦିବସ । ସେ ଦିନ ଛାତ୍ର ଓ ଯୁବକ ଏକ ବିରାଟ ଶୋଭାଯାତ୍ରାରେ ପୁଣି ସେକ୍ରେଟେରିଏଟକୁ ଯାଇଥିଲେ । ସେକ୍ରେଟେରିଏଟ୍ ଚାରିପଟେ ଗୁର୍ଖା ସୈନ୍ୟମାନେ ଜଗି ରହିଥାନ୍ତି । ଲୋକମାନେ ସେଠାରେ ଜାତୀୟ ପତାକା ଉଡ଼ାଇବାକୁ ଯିବାକୁ ଚାହିଁଲେ ମାତ୍ର ପୋଲିସ ମନା କରି ଦେଲା । ଏହା ଭଳି ହେଉଥିବା ବେଳେ ଜଣେ ୧୦ ବର୍ଷର ଗୋଟିଏ ଛୋଟ ପିଲା ଆସେମ୍ବ୍ଲି ଅଫିସ ଉପରେ ଜାତୀୟ ପତାକା ଉଡ଼ାଇଥିଲେ । ସେ ଦିନ ସେଠାରେ ଯେଉଁ ବିରାଟ ଜନ ସମାବେଶ ହୋଇଥିଲା ତହିଁରେ ବିହାର ସରକାର ଆତଙ୍କିତ ହୋଇ ପଡ଼ିଥିଲେ, ପୋଲିସ କର୍ତ୍ତୃପକ୍ଷ ସଙ୍ଗେ ସଙ୍ଗେ ସମବେତ ଜନତାଙ୍କୁ ସେଠାରୁ ଛାଡ଼ିଚାଲି ଯିବାକୁ ଆଦେଶ ଦେଇଥିଲେ ମାତ୍ର ଜନତା ଅଟଳ ରହିଲେ । କିଛି ସମୟ ପରେ ନିର୍ମମ ଭାବରେ ଗୁଳି ଚାଲିଲା । ଜନତାଙ୍କ ଭିତରୁ ୧୦ ଜଣ ସଙ୍ଗେ ସଙ୍ଗେ ଜୀବନ ହରାଇଥିଲେ ଓ ଅନେକ ଲୋକ ଆହତ ହୋଇ ଥିଲେ । ଆହତ ଲୋକଙ୍କ ଚିକିତ୍ସା ପାଇଁ ସେଠାରେ କୌଣସି ବ୍ୟବସ୍ଥା ହୋଇ ନ ଥିଲା । ଆହତ ଓ ମୃତ ବ୍ୟକ୍ତିମାନଙ୍କୁ ଘୋଷାରି ଡାକ୍ତର ଖାନାକୁ ନିଆ

ହୋଇଥିଲା । ପାଟନାରେ ଗୁଳି ଓ ଜନସାଧାରଣ ଅସନ୍ତୋଷ ବିପ୍ଳବର ଏହି ଯେଉଁ ସୂଚନା ଦେଲେ ତାହା ସଙ୍ଗେ ସଙ୍ଗେ ପ୍ରଦେଶର ଚାରିଆଡ଼େ ବ୍ୟାପି ଯାଇଥିଲା ଓ ଏହି ଭଳି ପ୍ରତିବାଦ ଓ ପ୍ରତିରୋଧ ଚାରିଆଡ଼େ ପ୍ରକାଶ ପାଇଥିଲା । ପାଟନାର ସେହି ମୃତଶବଙ୍କୁ ନେଇ ବଡ଼ ତମାମ ସହରର ଚାରିଆଡ଼େ ଶୋଭାଯାତ୍ରା ହୋଇଥିଲା ଓ ନାନା ପ୍ରକାର ବିପ୍ଳବ ଧ୍ୱନି ହୋଇଥିଲା । ଜେଲ ଫାଟକର ଭିତରେ ଥିବା ରାଜବନ୍ଦୀମାନେ ଏହି ଧ୍ୱନି ସଙ୍ଗେ ସ୍ୱର ମିଳାଇ ଜବାବ ଦେଉଥିଲେ । ସାଧାରଣ ଲୋକ ଭାବିଲେ ବାସ୍ତବିକ ସ୍ୱାଧୀନତା ନିକଟେଇ ଆସିଲା ।

ଏହାପରେ ସମଗ୍ର ବିହାରରେ ବିଶେଷତଃ ଉତ୍ତର ବିହାରର ଭାଗଲପୁର ପ୍ରଭୃତି ସ୍ଥାନରେ ଯାହା ଯାହା ଘଟିଲା ଅସନ୍ତୋଷ ବିପ୍ଳବର ଇତିହାସକୁ ତାହା ଗୌରବମୟ କରି ଦେଇ ଯାଇଛି । ଉତ୍ତର ବିହାରର ଅନେକ ସ୍ଥାନରେ ଇଂରେଜ ଶାସନ ଲୋପ ପାଇଗଲା ପରି ମନେ ହୋଇଥିଲା । ଜନସାଧାରଣ ସହସ୍ର ସହସ୍ର ସଂଖ୍ୟାରେ ଶୋଭାଯାତ୍ରା କରି ଯାଇ ବଡ଼ ବଡ଼ ପୋଲିସ ଷ୍ଟେସନକୁ ଦଖଲ କରି ନେଇଥିଲେ ଏବଂ ଯେଉଁଠି ଦଖଲ କରିବା ଅସମ୍ଭବ ହେଲା ତାକୁ ପୋଡ଼ି ପକାଇ ଥିଲେ ମାତ୍ର ବ୍ୟକ୍ତି-ଗତ ଭାବରେ ଥାନାର ଅଫିସର ବା ଅନ୍ୟ କୌଣସି କର୍ମଚାରୀ-ଙ୍କର କୌଣସି କ୍ଷତି କରି ନ ଥିଲେ । ଅନେକ ସ୍ଥାନରେ ଜନତା ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ ମଧ୍ୟ ବ୍ୟକ୍ତିଗତ କ୍ଷତି ତା ତୁଳନାରେ ବିଶେଷ କିଛି ହୋଇ ନାହିଁ । ଅନେକ ରେଲବାଇ ଷ୍ଟେସନ ଓ ଡାକଘରକୁ ପୋଡ଼ି ଦିଆ ହୋଇଥିଲା । ଅନେକ ସ୍ଥାନରେ ବହୁଦୂର ପର୍ଯ୍ୟନ୍ତ ରେଲଲାଇନ ଉଠାଇ ନିଆ ହୋଇଥିଲା ଓ ଟେଲିଗ୍ରାଫ ଓ ଟେଲିଫୋନ ତାର କାଟି ଦିଆ ହୋଇଥିଲା ।

ପୋଲିସ ଓ ସୈନ୍ୟ ଫଉଜଙ୍କ ଯାତାୟାତରେ ବାଧା ଜନ୍ମାଇବା ପାଇଁ ପ୍ରଧାନ ପ୍ରଧାନ ରାସ୍ତାକୁ ଅନେକ ଯାଗାରେ କାଟିଦିଆ ହୋଇଥିଲା ଓ ରାସ୍ତାକୁ ବନ୍ଦକରି ଦିଆ ହୋଇଥିଲା । ଅନେକ ପୋଷ୍ଟ ଅଫିସକୁ ଦଖଲ କରି କାଗଜପତ୍ରକୁ ନଷ୍ଟ କରିଦିଆ ହୋଇଥିଲା । ବହୁ ମଦ ଓ ଗଞ୍ଜେଇ, ଅଫିମ ଦୋକାନକୁ ମଧ୍ଯ ପୋଡ଼ି ଦିଆ ହୋଇଥିଲା । ଜନସାଧାରଣ ପୋଲିସ ଓ କର୍ତ୍ତୃପକ୍ଷଙ୍କ ସଙ୍ଗେ ପୂର୍ଣ୍ଣପୂର୍ଣ୍ଣ ଅସହଯୋଗ କରିବାରୁ ଅନେକ ପୋଷ୍ଟ ଅଫିସକୁ ବନ୍ଦ କରି ଦିଆ ହୋଇଥିଲା ଓ ମଫସଲ ଅଞ୍ଚଳରେ ଥିବା ଥାନା ଓ ପୋଷ୍ଟ ଅଫିସକୁ ସହରକୁ ଉଠାଇ ନିଆ ହୋଇଥିଲା । ଏଥି ମଧ୍ୟ ଭାଗଲପୁର ପ୍ରଭୃତିରେ ପ୍ରକୃତ ଜନସାଧାରଣଙ୍କ ଶାସନ ପ୍ରତିଷ୍ଠିତ ହୋଇଥିଲା । ମେଦନୀପୁରର ତମଲୁକ ଓ କଣ୍ଟାଇ ପରି ସେଠାରେ ରାସ୍ତାଘାଟ କଟିଯିବା ଓ ପୋଷ୍ଟ ଅଫିସ ପ୍ରଭୃତି ବନ୍ଦ ହୋଇ ଯିବା ଫଳରେ ବାହାରର ବାହ୍ୟ ଜଗତ ସଙ୍ଗେ ସମ୍ପର୍କ ଏକ ପ୍ରକାର ତୁଟି ଯାଇଥିଲା । ସରକାର ମଫସଲ ସଙ୍ଗେ ସମ୍ପର୍କ ରଖିବାକୁ ଉଡ଼ାଜାହାଜ ଯୋଗେ ଡାକ ନବା ଆଦେଶର ବ୍ୟବସ୍ଥା କରିଥିଲେ । ମାତ୍ର ଡାକ ନବା ଓ ଦେବା ବେଳେ ଅନେକ ସମୟ ଧରି ଜନତାଙ୍କ ସଙ୍ଗେ ସ୍ୱତନ୍ତ୍ର ଲଢ଼େଇ କରିବାକୁ ପଡ଼ୁଥିଲା । ଅନେକ ସ୍ଥାନରେ ସ୍ଥାନୀୟ ଅଫିସରମାନେ ଜନତାଙ୍କ ନିକଟରେ ଆତ୍ମସମର୍ପଣ କରି ବ୍ରିଟିଶ ସରକାରଠାରୁ ସମ୍ପର୍କ ତୁଟାଇବାକୁ ବାଧ୍ୟ ହୋଇଥିଲେ । ଜନସାଧାରଣଙ୍କ ଅହିଂସା ଓ ଭଦ୍ରତା ଆଚରଣ ଯୋଗୁ ଶହ ଶହ ଗୋରା ଅଫିସରଙ୍କ ପ୍ରାଣ ରକ୍ଷା ହୋଇ ପାରିଥିଲା । ଜଣେ ଗୋରା ଅଫିସର ପାଲିଙ୍କିରେ ବୋହୁ ସାଜି ଖସି ପଳାଇ ଯାଇଥିଲେ । ଏହି ଭଳି ଆହୁରି ଅନେକ ମଜା ଘଟଣାମାନ ଘଟିଥିଲା ।

କେତେ ସପ୍ତାହ ପର୍ଯ୍ୟନ୍ତ କୌଣସି ପୋଲିସ ବା ସୈନ୍ୟ ଫଳ୍କ ପ୍ରବେଶ କରି ପାରି ନ ଥିଲେ । ଅନେକ ସରକାରୀ ଅଫିସରଙ୍କୁ ଅଜାଦ ଜେଲରେ ଅଟକ ବନ୍ଦୀ କରି ରଖାଯାଇଥିଲା ଓ ପୂର୍ବପରି ଜନତା ସରକାର ପ୍ରତିଷ୍ଠା କରି ଯାଇଥିଲା । ଜାତୀୟ ସରକାର ପକ୍ଷରୁ କୋର୍ଟ କଚେରୀରେ ବିଚାର ବ୍ୟବସ୍ଥା, ବିଦ୍ୟାଳୟମାନଙ୍କରେ ଜାତୀୟ ଶିକ୍ଷା ବ୍ୟବସ୍ଥା ପ୍ରଭୃତି ଆରମ୍ଭ କରିଯାଇଥିଲା । କଂଗ୍ରେସ ଓ ଅନ୍ୟାନ୍ୟ ବାମପନ୍ଥୀ ଦଳର କେତେକ ବିଶିଷ୍ଟ ନେତା ପୋଲିସର ଦୃଷ୍ଟି ଅନ୍ତରାଳରେ ରହି ସମଗ୍ର ପ୍ରଦେଶର ଜନସାଧାରଣଙ୍କୁ ବିପ୍ଳବର ଦୈନନ୍ଦିନ ନିର୍ଦ୍ଦେଶମାନ ଦେଉଥିଲେ । ଗୁପ୍ତମତ ଛପା ପତ୍ରିକା ଓ ବାର୍ତ୍ତା ବାହକଙ୍କ ସାହାଯ୍ୟରେ ସେମାନେ ସବୁ ପ୍ରଦେଶର ଅଂଶ ସଙ୍ଗେ ସମ୍ପର୍କ ରଖିଥିଲେ । ବିହାରରେ ଏହିଭଳି ବିପ୍ଳବ ଚାଲିଥିଲା ବେଳେ ସମଗ୍ର ବିହାର ତଥା ଭାରତ ବାସୀ ଦିନେ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇ ଶୁଣିଲେ ସେ ଭାଗଲପୁର କେନ୍ଦ୍ର ଜେଲରୁ ବିଶିଷ୍ଟ ବିପ୍ଳବୀ ସାମ୍ୟବାଦୀ ନେତା ଶ୍ରୀଜୟପ୍ରକାଶ ନାରାୟଣ, ଶ୍ରୀରାମନନ୍ଦନ ସିଂହ ଓ ଶ୍ରୀ ଯୋଗେନ୍ଦ୍ର ଶୁକ୍ଳ ପ୍ରମୁଖ ପାଞ୍ଚଜଣ ଅଟକବନ୍ଦୀ ଜେଲ କର୍ତ୍ତୃପକ୍ଷଙ୍କ ଆଖିରେ ଧୂଳି ପକାଇ ଦେଇ ଜେଲରୁ ଖସି ପଳାଇଛନ୍ତି । ଅଗଷ୍ଟ ବିପ୍ଳବ ପୂର୍ବରୁ ବିଖ୍ୟାତ ଫରୱାର୍ଡ ବ୍ଲକ ନେତା ଶ୍ରୀ ଶୀଳଭଦ୍ର ଯାଜୀ ଲୁଚି ରହିଥିଲେ । ଏମାନେ ସମସ୍ତେ ପ୍ରାୟ ଅଢ଼େଇ ବର୍ଷ କାଳ ଭାରତର ଚାରିଆଡ଼େ ଭ୍ରମଣ କରି ବିଭିନ୍ନ ପ୍ରଦେଶର ଅଗଷ୍ଟ ବିପ୍ଳବ ସଙ୍ଗେ ସମ୍ପୃକ୍ତଥିବା କର୍ମୀମାନଙ୍କ ସଙ୍ଗେ ସଂପର୍କ ସ୍ଥାପନ କରି କର୍ମୀମାନଙ୍କ ମନରେ ପୁଣି ଉତ୍ସାହ ଓ ଉନ୍ମାଦନା ଆଣି ଦେଇଥିଲେ ।

ଏହିକଲି ମାସ ମାସ ଧରି ଜନତାର ବିଜୟ ହେବା ପରେ ବ୍ରିଟିଶ ସରକାର ବର୍ଗଟ ସୈନ୍ୟ ଫଉଜ ଅଣି ଅତୁଳନୀୟ ଅମାନୁଷିକ ଅତ୍ୟାଚାର ଓ ଦମନଲୀଳା ଚଳେଇ ଜନସାଧାରଙ୍କୁ ଦମନ କରିବାକୁ ଉଦ୍ୟମ କରିଥିଲେ । ଏହା ଫଳରେ ବିହାରବାସୀ ଯେଉଁ ଅତ୍ୟାଚାର ସହ୍ୟ କରିଛନ୍ତି ତାହା ସେମାନେ କେବେ ଭୁଲି ଯିବେ ନାହିଁ । ଆଜ ସେମାନେ ତାର ପ୍ରତିଶୋଧ ନ ନେଇ ପାରିଲେ ମଧ୍ୟ ଶ୍ରୀମତୀ ଅରୁଣା ଆସଫଅଲିଙ୍କ ଭାଷାରେ କହିଲେ ତାଙ୍କ ବଂଶଧରମାନେ ଦିନେ ତାର ପ୍ରତିଶୋଧ ନେବେ । ନିଜେ ସରକାର କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ର ଏକ ପ୍ରଶ୍ନର ଉତ୍ତରରେ ସ୍ୱୀକାର କରିଛନ୍ତି ଯେ ପାଟନା ଜିଲ୍ଲାର ଗିରିଅକ ନିକଟବର୍ତ୍ତୀ ରେଲଷ୍ଟେସନରେ ଭାଗଲପୁରର ଶୁରସେଲାରେ ଥିବା ରେଲଷ୍ଟେସନରେ ଓ ମୁଙ୍ଗେର ଜିଲାର ଏକ ଷ୍ଟେସନରେ ଉଡ଼ାଜାହାଜରୁ ମେସିନଗନ ସାହାଯ୍ୟରେ ସମବେତ ଜନତାଙ୍କ ଉପରକୁ ଗୁଳି କରା ଯାଇଥିଲା । ବିହାରର ଭୂତପୂର୍ବ ପାର୍ଲିଆମେଣ୍ଟାରି ସେକ୍ରେଟେରି ଶ୍ରୀ ଜଗନାରାୟଣ ଲାଲ ବିହାର ଅଞ୍ଚଳ ଗସ୍ତ କରି ଜନସାଧାରଣଙ୍କ ଉପରେ ଯେ ଭଳି ଅତ୍ୟାଚାର ହୋଇଥିଲା ତାର ବହୁ ଦୃଷ୍ଟାନ୍ତ ପ୍ରକାଶ କରିଛନ୍ତି । ଶ୍ରୀଯୁକ୍ତ ଲାଲ ପାଟନା ଜଲ୍ଲ ଓ ସାହାବାଦ ଜଲାର କେତେକ ସବ୍‌ଡିଭିଜନ୍ ଓ ଟାଁ ବୁଲି ନିଜେ ସମ୍ବାଦ ସଂଗ୍ରହ କରି ଅସିଛନ୍ତି ଯେ ସେହିସବୁ ଅଞ୍ଚଳରେ ପୋଲିସ ଜନସାଧାରଣଙ୍କ ଉପରେ ଅନ୍ଧି ବୁନ୍ଦ ଗୁଳି ଚଳେଇଥିଲେ ଓ ଲୋକଙ୍କୁ ଭୟ ଭୀତ କରାଇବା ପାଇଁ ଘୋର ନିଷ୍ଠୁରତା ସହ ଲୋକଙ୍କୁ କଷ୍ଟ ଦେଇଥିଲେ । ଏହି ସବୁ ସ୍ଥାନରେ ଅନ୍ଧି ବୁଜି ଲୋକଙ୍କ ଉପରେ ଅତ୍ୟାଚାର କରିବା ପାଇଁ ସଶସ୍ତ୍ର ପୋଲିସ ଓ ସୈନ୍ୟ ଫଉଜଙ୍କୁ ଅବାଧ କ୍ଷମତା ଦିଆ

ହୋଇଥିଲା । କେଉଁଠି ହୁଏତ ଜଣେ ଲୋକ ତା ନୋଟା ଓ ବାଡ଼ି ନେଇ ଖାଇବାକୁ ଯାଉଥିବା ବେଳେ ତା'ଠାରୁ ନୋଟା ଓ ବାଡ଼ି ଛଡ଼ାଇ ରଖିବାକୁ ଜୋର କରି ଯାଇଛି ମାତ୍ର ସେ ନ ଦେବାରୁ ତାକୁ ସଙ୍ଗେ ସଙ୍ଗେ ଗୁଳି କରି ହତ୍ୟାକରି ଯାଇଛି । ଗୋଟିଏ ଗୋଟିଏ ହରିଜନ ପରିବାରରେ ସ୍ତ୍ରୀ ଓ ପିଲାଙ୍କୁ ମଜା ଦେଖିବା ପାଇଁ ଗୁଳି କରି ଦିଆ ହୋଇଛି । ମୋକାମାର ନିକଟବର୍ତ୍ତୀ ସ୍ଥାନରେ କେବଳ ୩୦ ଜଣଙ୍କୁ ଗୁଳି କରି ହତ୍ୟା କରି ଯାଇଥିବାର ଜଣା ଯାଇଛି । ପଞ୍ଜାବରେ ବକ୍ତୃତା ଦେଉଥିବାବେଳେ ଗୁଳିକରି ଲୋକଙ୍କୁ ମାରିଦିଆ ହୋଇଛି । ଅନେକ କଂଗ୍ରେସ କର୍ମୀଙ୍କର ଘରପୋଡ଼ି ଦିଆ ହୋଇ ସେମାନଙ୍କ ଘରୁ ସବୁ ଜିନିଷ ପତ୍ର ଲୁଟ କରି ନିଆ ହୋଇଛି । ସାହାବାଦ ଜିଲ୍ଲାର ଶ୍ରୀ ଚନ୍ଦ୍ରମନ ସିଂହଙ୍କ ଘରର ସ୍ଥାନ ଓଟାରି ଦେବାକୁ ଲୋକମାନେ ମନା କରିବାରୁ ସେମାନଙ୍କୁ ଟାଣି ଘୋଷାରି ସେମାନଙ୍କୁ ରକ୍ତ ବୁହା କରି ଦିଆ ହୋଇଥିଲା । ବିହାରର ପ୍ରତ୍ୟେକ ଜିଲ୍ଲାରେ ସହର ଓ ଗ୍ରାମମାନଙ୍କରେ ଏହିଭଳି ଅମାନୁଷିକ ଅତ୍ୟାଚାର ଜୁଲୁମ ଓ ଦୁଃଖ କଷ୍ଟ ଲୋକଙ୍କୁ ସହ୍ୟ କରିବାକୁ ହୋଇଛି ।

## ଟାଟା ଶ୍ରମିକ ଧର୍ମଘଟ

ଅହମଦାବାଦର ବୀର ଶ୍ରମିକଙ୍କ ଅସୀମ ଓ ଅତୁଳନୀୟ ତ୍ୟାଗ ସଙ୍ଗେ ତୁଳନୀୟ ନ ହେଲେ ମଧ୍ୟ ଅଗଷ୍ଟ ବିପ୍ଳବରେ ଟାଟାନଗରର ୩୦ ହଜାର ଶ୍ରମିକ ସେମାନଙ୍କ ସାଧ୍ୟମତ ଦାନ ଦେଇ ଯାଇଛନ୍ତି । କଂଗ୍ରେସ ନେତୃବର୍ଗଙ୍କ ମୁକ୍ତି ଦାବୀ କରି ଟାଟାର ଶ୍ରମିକମାନେ ସଂଘବଦ୍ଧ ହୋଇ ଯେଉଁ ୧୩ ଦିନ ବ୍ୟାପି ଶାନ୍ତିପୂର୍ଣ୍ଣ ଧର୍ମଘଟ କରିଥିଲେ, ଟାଟାର ବିରାଟ କାରଖାନା ମାଲିକମାନେ

ତର୍ହିଁରେ ଥରଥର ହୋଇ ଯାଇଥିଲେ । ସରକାରୀ ଯାଞ୍ଚ ଫଳରେ ଏହି ବିରାଟ ଧର୍ମଘଟର କାହାଣୀ ବହୁକାଳ ପର୍ଯ୍ୟନ୍ତ ପ୍ରକାଶ ପାଇ ପାରି ନ ଥିଲା । ଅଗଷ୍ଟ ୯ ତାରିଖ ସନ୍ଧ୍ୟାବେଳେ ଟାଟା ଶ୍ରମିକ ସଂଘ ବୈଠକରେ ୧୦ଦିନ ଧର୍ମଘଟ କରିବା ପାଇଁ ଘୋଷଣା କରାଗଲା । ଯାମସେଦପୁରରେ ଦିନକୁ ୩ଥର କାମ ହୁଏ ତେଣୁ ସବୁ ଶ୍ରମିକ ପ୍ରତିନିଧିମାନେ ସେହି ସଭାରେ ଉପସ୍ଥିତ ହୋଇ ପାରି ନ ଥିଲେ । ଅଗଷ୍ଟ ୧୦ଦିନ ଧର୍ମଘଟରେ ସବୁ ବିଭାଗର ଶ୍ରମିକମାନେ ଯୋଗ ଦେଇ ପାରିନଲେ ନାହିଁ ତେଣୁ ସେଦିନ ଆଂଶିକ ଭାବରେ ଧର୍ମଘଟ ସଫଳ ହେଲା । ମାତ୍ର ସେଦିନ ଧର୍ମଘଟ ଫଳରେ ଶ୍ରମିକ ତଥା ଅଫିସରମାନେ ସମସ୍ତେ ଭାବରେ ସେ ଅଗଷ୍ଟ ବିପ୍ଳବର ବାର୍ତ୍ତାକୁ ଅନୁଭବ କରିଥିଲେ ତାହା ସ୍ପଷ୍ଟ ଜଣା ପଡ଼ି ଯାଇଥିଲା । ଟାଟାର ସରକାରୀ ସଂବାଦ ଯୋଗାଣ ବିଭାଗ ଖବର ଦେଲେ ଯେ ଟାଟାନଗରେ ଅବସ୍ଥା ଠିକ୍ ଅଛି । ୧୯୪୨ ଅଗଷ୍ଟ ୨୦ ତାରିଖ ଦିନ ପ୍ରଥମ ଥର କାମ ଆରମ୍ଭବେଳେ ବ୍ଲାଷ୍ଟଫରନେନ୍ସ୍ ବିଭାଗର ଶ୍ରମିକମାନେ ସେହି ବିଭାଗର କର୍ମକର୍ତ୍ତାମାନଙ୍କୁ ଜଣାଇ ଦେଲେ ଯେ ସେମାନେ ଅଳ୍ପ କାଳଠାରୁ ଧର୍ମଘଟ କରିବେ ତେଣୁ ଫରନେନ୍ସକୁ ବନ୍ଦ କରି ଦେଇ ଯିବାକୁ ସେମାନେ ଚାହାନ୍ତି କାରଣ କାରଖାନାର କୌଣସି କ୍ଷତି କରିବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ, ମାତ୍ର କର୍ମକର୍ତ୍ତାମାନେ ସେମାନଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ । ଉପରବେଳା ଓପନ୍‌ହାର୍ଥ ବିଭାଗର ଶ୍ରମିକମାନେ ପ୍ରଥମେ କାମ ବନ୍ଦ କରି ଦେଲେ । ଧର୍ମଘଟ ସଂବାଦ ଚାରିଆଡ଼େ ବ୍ୟାପିଗଲା ଓ ଅନେକ ବିଭାଗର ଶ୍ରମିକମାନେ କାମ ଛାଡ଼ିଦେଲେ । ଏହା ଭିତରେ ଅଗଷ୍ଟ ୧୫ ଦିନ ରାତିରେ ଜାମସେଦପୁର ପୋଲିସ

ଟାଟାର ଶ୍ରୀଯୁକ୍ତ ଜନ୍, ଏମ୍ ଘୋଷ, ଟି. ସିଂହ, ଏନ୍ ମୁଖାର୍ଜି ଓ ୨୧ ବର୍ଷ ବୟସ୍କ ଶିଖ ଯୁବକ ନେତା ଚେତ୍ରା ସିଂହ ପ୍ରମୁଖ ୫ ଜଣ ଶ୍ରମିକନେତାଙ୍କୁ ଗିରଫ କରି ନେଇଥିଲେ । ଶିଖ ଯୁବକ ନେତା ଚେତ୍ରାସିଂହ ପାଟଣା କ୍ୟାମ୍ପ ଜେଲରେ ଦୁଇଥର ଅନଶନ କରିଥିଲେ ଓ ଶେଷଥର ଅନଶନରେ ଜୀବନ ହରାଇଥିଲେ । ଅଗଷ୍ଟ ୨୦ ତାରିଖ ଦିନ ଯୁବକ ପାର୍ଟି ନେତା ମିଃ ମଜନଙ୍କୁ ଗିରଫ କରି ନାଅ ହୋଇ ତାଙ୍କ ଘରକୁ ଜବରଦସ୍ତି ସୈନ୍ୟ ଛାଉଣୀରେ ପରିଣତ କରି ଦିଆ ହେଲା । ଅଗଷ୍ଟ ୨୦ ତାରିଖ ଦିନ ଟାଟାର ୩୦ ହଜାର ଶ୍ରମିକ ଯେଉଁ ବିରାଟ ଧର୍ମଘଟ କରିଥିଲେ ତାହା ଏପରି ଶାନ୍ତିପୂର୍ଣ୍ଣ ଓ ସ୍ୱେଚ୍ଛାକୃତ ହୋଇଥିଲା ଯେ ଅମେରିକାନ ଓ ବ୍ରିଟିଶ ସୈନ୍ୟମାନେ ମଧ୍ୟ ପ୍ରଶଂସା ନ କରି ରହି ପାରି ନ ଥିଲେ । କାରଖାନାର ପରିଚାଳକମାନେ ଫାଟକ ପୂରାପୂରି ଖୋଲି ରଖି ଶ୍ରମିକମାନଙ୍କୁ କାମରେ ଯୋଗଦେବା ପାଇଁ ନାନାପ୍ରକାର ପ୍ରବର୍ତ୍ତାଇଥିଲେ । ଶ୍ରମିକମାନଙ୍କୁ ଲାଞ୍ଚ ଖାଉଥିଲେ ଓ ଧମକ ଦେଇଥିଲେ ମାତ୍ର ଆନନ୍ଦର କଥା ଯେ ଶ୍ରମିକମାନେ ଅଟଳ ରହିଥିଲେ । ସେହିଦିନ ସନ୍ଧ୍ୟାବେଳେ ଧର୍ମଘଟ-କାରୀମାନେ ଏକଜୁଟ ହୋଇ ଧର୍ମଘଟକୁ ଚଳାଇ ରଖିବା ପାଇଁ ନିଷ୍ପତ୍ତି କରିଥିଲେ । ଏହା ଭିତରେ କାରଖାନାର କର୍ମକର୍ତ୍ତାମାନେ ଉପରପାହ୍ୟାରେ କାମ କରୁଥିବା କର୍ମଚାରୀମାନଙ୍କୁ ଡାକି ନେଇ କହିଲେ ଯେ ଶ୍ରମିକମାନଙ୍କ ପ୍ରତିବାଦ ଓ ବିକ୍ଷୋଭ ପ୍ରତି ଆମର ସହାନୁଭୂତି ରହିଛି । ସେମାନେ ଏକଜୁଟ ହୋଇ ପ୍ରତିବାଦ କରି ସାରିଲେଣି ବର୍ତ୍ତମାନ କାମରେ ଯୋଗ ଦିଅନ୍ତୁ । ଏହି ବୈଠକରେ ଜଣା ପଡ଼ିଥିଲା ଯେ ୨୨,୫୦୦ କ୍ୱାର୍ଟର୍ସ୍ୟାଟ-ପାର୍ଓ୍ୟାରର ନୂଆ କଳଟିକୁ ଶ୍ରମିକମାନେ ଧର୍ମ ଘଟ ପୂର୍ବରୁ

ସାବଧାନତାସହ ବନ୍ଦ କରଦେଇ ଅସିଥିଲେ ଓ ମାଲ ଯାତାୟାତ ବିଭାଗର ଶ୍ରମିକମାନେ କାମ ଛାଡ଼ିବା ପୂର୍ବରୁ ଲାଇନକ୍ଲିଅର କରି ଦେଇ ଅସିଥିଲେ ।

ଟାଟା କାରଖାନାର ସର୍ବୋଚ୍ଚ କର୍ମ କର୍ତ୍ତା ସାର ଅର୍ଦ୍ଦେଶିର ଦଲାଲ ବମ୍ବେରୁ ଆସିଲା ପରେ ଧର୍ମଘଟ ଅବସ୍ଥା ଅନ୍ୟ ଅକାର ଧାରଣ କଲା । ସାର ଦଲାଲ ସବୁ ବିଭାଗର ଦୁଇଜଣ କରି ପ୍ରତିନିଧି ଡକାଇ ଏକ ବୈଠକ କଲେ ଓ ସେହି ବୈଠକରେ କହିଦେଲେ ଯେ ଶ୍ରମିକମାନଙ୍କ ଧର୍ମଘଟ ପ୍ରତି ତାଙ୍କର ସହାନୁଭୂତି ଅଛି । ସେ ନିଜେ ସାର ଟାଟାଙ୍କ ସହମତି ନେତାମାନଙ୍କ ମୁକ୍ତିପାଇଁ କର୍ମପନ୍ଥା ସ୍ଥିର କରିବାକୁ ବମ୍ବେ ଯାଉଛନ୍ତି । ଏବଂ ବର୍ତ୍ତମାନ ଅବସ୍ଥାରେ ଯୁଦ୍ଧଉଦ୍ୟମକୁ ସାହାଯ୍ୟ କରିବା ଉଚିତ ବୋଲି ମତ ପ୍ରକାଶ କରି ଶ୍ରମିକମାନେ ତୁରନ୍ତ କାମରେ ଯୋଗ ଦିଅନ୍ତୁ ବୋଲି ଜଣାଇ ଥିଲେ । ଶ୍ରମିକ ପ୍ରତିନିଧିମାନେ କହିଥିଲେ ସେମାନେ ଭାରତ ରକ୍ଷା ପାଇଁ ସମସ୍ତେ ଏକମତ ଓ ଯୁଦ୍ଧ ଉଦ୍ୟମରେ ସେମାନେ ସ୍ୱାଧୀନ ଭାବରେ ସାହାଯ୍ୟ କରିବାକୁ ଚାହାନ୍ତି ତାହା ତାଙ୍କୁ ବୁଝାଇ ଦେଇଥିଲେ । ଟାଟା ଶ୍ରମିକମାନେ ତାପରଦିନ ଏକ ବୈଠକରେ ଏ ବିଷୟ ଆଲୋଚନା କଲେ । ୩ଘଣ୍ଟା କାଳ ଦୀର୍ଘ ଆଲୋଚନା ପରେ ବହୁ ସଂଖ୍ୟକ ଶ୍ରମିକ ଏକ ପ୍ରସ୍ତାବ କଲେ ଯେ ନେତା ଓ ଅଟକବନ୍ଦୀମାନଙ୍କ ଖଲାସ ନ ହେବା ପର୍ଯ୍ୟନ୍ତ ସେମାନେ ଧର୍ମଘଟ ଜାରୀ କରି ରଖିବେ । କାରଖାନା ମାଲିକମାନେ ଶ୍ରମିକମାନଙ୍କ ପ୍ରବୃତ୍ତିର ନ ପାରିବାରୁ ଧର୍ମଘଟ ଭାଙ୍ଗିବାକୁ ଅପକୌଶଳମାନ ପ୍ରୟୋଗ କଲେ । ଧର୍ମଘଟ ବିରୁଦ୍ଧରେ ପ୍ରଚାର, ସାମ୍ପ୍ରଦାୟିକ ଭେଦଭାବ ସୃଷ୍ଟି ଓ ଧମକ ଚମକ

ସ୍ଥିର କଲେ । ସାର ଦଳର ଘୋଷଣା କରି ଦେଲେ ଯେ ଯେଉଁମାନେ ସେପ୍ଟେମ୍ବର ୫ ତାରିଖରେ ଯୋଗ ନ ଦେବେ ସେମାନଙ୍କ ଚାକିରି ରହିବ ନାହିଁ । ମାତ୍ର ତାଙ୍କ ଧମକରେ କିଛି ଫଳ ହେଲା ନାହିଁ । ଅଜ ଏକ ଗୁଜବ ସୃଷ୍ଟି ହେଲା ଯେ ୫୦୦ ବେଲଜିୟମବାସୀ କାମ କରିବାକୁ ଆସୁଛନ୍ତି । ଏହା ଫଳରେ ଶ୍ରମିକମାନେ ଟିକିଏ ଦୁର୍ବଳ ହୋଇ ପଡ଼ିଲେ । ସେହି ଦିନ ସନ୍ଧ୍ୟା ବେଳେ ଶ୍ରମିକମାନଙ୍କର ଏକ ସଭାରେ ବହୁ ସଂଖ୍ୟକ ଭୋଟରେ କାମରେ ଯୋଗଦେବା ପାଇଁ ସ୍ଥିର ହେଲା । ମାତ୍ର ଅନେକ ଶ୍ରମିକ ରାଜି ହୋଇ ନ ଥିଲେ । ଯାହାହେଉ ଶ୍ରମିକମାନେ ସମସ୍ତେ ସଂଘବଦ୍ଧ ହୋଇ ଧର୍ମଘଟ କରିବାକୁ ସ୍ଥିର କରିଥିଲେ । ତେଣୁ ଥରେ ସେମାନଙ୍କ ଭିତରେ ମତଭେଦ ହୋଇ ଯିବା ପରେ ଆଉ ସଜାଡ଼ି ହୋଇ ପାରିଲା ନାହିଁ । ଦୀର୍ଘ ୧୩ ଦିନ ସୁସ୍ପୁରି ଧର୍ମଘଟ କରିବା ପରେ ସେପ୍ଟେମ୍ବର ୫ ତାରିଖ ଦିନ ଅଧିକାଂଶ ଶ୍ରମିକ କାମରେ ଯୋଗ ଦେଲେ ।

ଶ୍ରମିକମାନଙ୍କ ଧର୍ମଘଟ ବେଳେ ଜାମସେଦପୁର ପୋଲିସମାନେ ଶ୍ରମିକମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରି ଯେଉଁ ସାହସ ଦେଖାଇଥିଲେ ଅଗଷ୍ଟ ବିପ୍ଳବରେ ତାହା ଏକ ସ୍ମରଣୀୟ ଘଟଣା ହୋଇ ରହିବ । ଜାମସେଦପୁର ପୋଲିସ ସ୍ଥିର କରି ଦେଲେ ଯେ ସେମାନେ ରାଜନୈତିକ ସଂଗ୍ରାମରେ କୌଣସି ପ୍ରକାରେ ବାଧା ଦେବେ ନାହିଁ । ଲାଠିମାଡ଼ ଦେବାକୁ ନିର୍ଦ୍ଦେଶ ଦିଆ ହେଲେ ମଧ୍ୟ ସେମାନେ ତାହା କରିବେ ନାହିଁ । ପୋଲିସମାନଙ୍କ ନେତା ଜମାଦାର ଡେଓ୍ୟାସିଙ୍କୁ ଅନ୍ୟ ସ୍ଥାନକୁ ବଦଳି କରି ଦେବା ପାଇଁ ଆଦେଶ ହୋଇଗଲା । ମାତ୍ର ପୋଲିସମାନେ ଧର୍ମଘଟ କରି ପୋଲିସ ଛାଉଣୀ ଭିତରେ ମଧ

ଚେର୍ଜ୍ୟାଗ୍ରିଙ୍କ ସହ ଏକଜୁଟ ହୋଇ ରହିଥିଲେ । ସେହିଦିନ ଅଧରାତ୍ରରେ ଦଳେ ଲୋକ ଟଁଲଗଟ ନେଇ ପୋଲିସ ଛାଉଣୀ ଭିତରେ ପଶି ପୋଲିସଙ୍କୁ ନିଦରୁ ଉଠାଇଥିଲେ ଓ ରିଭଲଭର ଦେଖାଇ ଧମକାଇଥିଲେ ଯେ ହୁଏତ ସେମାନେ କାମରେ ଯୋଗ ଦିଅନ୍ତୁ ନ ହେଲେ ଛାଗ୍ର ବରଣ କରନ୍ତୁ । ପୋଲିସମାନଙ୍କ ଭିତରୁ ୫୨ ଜଣ କାମରେ ଯୋଗ ଦେବାକୁ ମନା କରି ଦେଇ ଜେଲ୍ ବରଣ କରିଥିଲେ । ଏହାପରେ ସଂଖ୍ୟାଲଘିଷ୍ଠ ଦଳର ଶ୍ରମିକମାନେ ଆଉ ଥରେ ଧର୍ମଘଟ କରିବାକୁ ଉଦ୍ୟମ କରି ପିକେଟିଙ୍ଗ୍ ଆରମ୍ଭ କରିଥିଲେ । ମାତ୍ର ସେମାନେ ସଫଳ ହୋଇ ପାରିଲେ ନାହିଁ ଓ ଶେଷରେ ଭାଗ୍ର ବରଣ କଲେ ।

## ସହିଦ୍ ହେମୁ କଲ୍ୟାଣୀ ଓ ମହେନ୍ଦ୍ର ଗୋପ

ସିନ୍ଧର ଅଗଷ୍ଟ ବିପ୍ଳବୀ ସହିଦ୍ ହେମୁକଲ୍ୟାଣୀ ଓ ବିହାରର ସହିଦ୍ ମହେନ୍ଦ୍ର ଗୋପଙ୍କ କଥା ଉଲ୍ଲେଖ ନ କଲେ ଅଗଷ୍ଟ ବିପ୍ଳବର କାହାଣୀ ଅପୂର୍ଣ୍ଣ ରହିବ । ସୁକ୍କୁର ହାଇସ୍କୁଲ୍ ଛାତ୍ର ୧୯ ବର୍ଷର ହେମୁକଲ୍ୟାଣୀ ରେଲପାହ୍ୟା ଉଠାଇବାକୁ ଉଦ୍ୟମ କରୁଥିବା ଅଭିଯୋଗରେ ଧରି ପଡ଼ି ବିଚାରରେ ଫାସି ପାଇଛନ୍ତି । ୧୯୪୩ ଜାନୁୟାରୀରେ ତାଙ୍କୁ ଫାସି ଦିଆ ହେଲା । ବିହାରର ମହେନ୍ଦ୍ର ଗୋପଙ୍କୁ ୧୯୪୫ ନଭେମ୍ବର ତା୨ରିଖରେ ଫାସି ଦିଆ ହେଲା । ଡ଼ାଃ ରାଜେନ୍ଦ୍ର ପ୍ରସାଦଙ୍କ ନିବେଦନ ମଧ୍ୟ ବିଫଳ ହେଲା ।

# ଅନ୍ଧାରି ମୁଲକରେ ଅଗଷ୍ଟ ବିପ୍ଳବ

ଭାରତର ଗଡ଼ଜାତକୁ ସଦା ହେନ୍ଦୁ 'ଅନ୍ଧାର ମୁଲକ' ବୋଲି ଅଭିହିତ କରି ଗଡ଼ଜାତବାସୀଙ୍କୁ ହେୟ, ଅଶିକ୍ଷିତ ଓ ନିର୍ବୋଧ ବୋଲି ମନେ କରୁଥାଏ ତାହେଲେ ୧୯୪୨ ଅଗଷ୍ଟ ବିପ୍ଳବର ଇତିହାସ ତାଙ୍କୁ ଲଜ୍ଜା ଦେବ । ଅଗଷ୍ଟ ବିପ୍ଳବ ଅନ୍ଧାର ମୁଲକର ନାମ ପୋଛି ଦେଇଛି ଓ ବୀର ଗଡ଼ଜାତ-ବାସୀଙ୍କୁ ଖାସ ଭାରତର ବିପ୍ଳବୀମାନଙ୍କ ସଙ୍ଗେ ଏକ ଆସନ ଦେଇଛି । ଅଗଷ୍ଟ ବିପ୍ଳବରେ ବୀର ଗଡ଼ଜାତବାସୀଙ୍କ ତ୍ୟାଗ ଦୁଃଖବରଣ ଓ ସାହସ ସେମାନଙ୍କୁ ଆଜି ସମଗ୍ର ଭାରତ ଦୃଷ୍ଟିରେ ଅତି ମହନୀୟ ଓ ଆଦର୍ଶସ୍ଥାନୀୟ କରି ଦେଇଛି । ଆଶ୍ଚର୍ଯ୍ୟ କଥା ଅଗଷ୍ଟ ବିପ୍ଳବ ବେଳେ ଭାରତର ବିଭିନ୍ନ ଗଡ଼ଜାତ-ମାନଙ୍କରେ ଯେଉଁ ଆନ୍ଦୋଳନ ହୋଇଥିଲା ସେ ସବୁ ଯେମିତି ଗୋଟାଏ ସୁନିର୍ଦ୍ଦିଷ୍ଟ କର୍ମଯୋଜନା ଅନୁସାରେ ପରିଚାଳିତ ହେଲା ଭଳି ଜଣାପଡ଼ୁଥିଲା । ଅଧିକାଂଶ ଗଡ଼ଜାତର ପ୍ରଜା-ମଣ୍ଡଳ ବା ପ୍ରଜାପରିଷଦମାନେ ଜନସାଧାରଣଙ୍କୁ ସ୍ୱାୟତ୍ତ ଶାସନ ଦେଇଦେବା ପାଇଁ ଚରମ ପତ୍ରମାନ ଦେଇଥିଲେ ଓ ସାର୍ବଭୌମ ଶକ୍ତି ବ୍ରିଟିଶ ସରକାରଠାରୁ ସମସ୍ତ ସମ୍ପର୍କ ତୁଟାଇ ଦେବା ପାଇଁ ଶାସକମାନଙ୍କୁ ଜଣାଇ ଦେଇଥିଲେ । ଗଡ଼ଜାତ-ମାନଙ୍କରେ ଅନ୍ୟାନ୍ୟ ସ୍ଥାନ ପରି ଛାତ୍ରମାନେହିଁ ବିପ୍ଳବର ସୂତ୍ର ଦେଇଥିଲେ ଓ ବିପ୍ଳବରେ ପ୍ରଧାନ ସ୍ଥାନ ଅଧିକାର କରିଥିଲେ । ଖାସ ଭାରତ ପରି ଅନେକ ସ୍ଥାନରେ ଗଡ଼ଜାତ-ବାସୀମାନେ ସମସ୍ତ ଶାସନ ଶକ୍ତି ନିଜ ହାତକୁ ନେଇ ଯାଇଥିଲେ ଓ ଶାସକମାନେ ଶେଷରେ ବାଧ୍ୟ ହୋଇ ସେମାନଙ୍କ ସଙ୍ଗେ

ମିଳାମିଶା କରିଥିଲେ ଏହା ଫଳରେ ଅଟକବନ୍ଦୀମାନେ ସବୁ ଅଡ଼େ ଖଲାସ ହୋଇ ଯାଇଥିଲେ ।

## କୋରନ୍‌ରେ—

ଐତିହାସିକ ଗୋଅଲିଅ ମଇଦାନରେ ସହସ୍ର ସହସ୍ର ଜନତା ସତ୍ୟାଗ୍ରହୀମାନଙ୍କୁ ଦେଖିବା ପାଇଁ ସମବେତ ହୋଇଥାନ୍ତି । ସେ ଦିନ ଅଗଷ୍ଟ ୯ ତାରିଖ ସକାଳ । ସତ୍ୟାଗ୍ରହୀ-ମାନେ ଦେଶସେବିକାମାନଙ୍କ ପାରେଡ଼ ଦେଖିବେ ବୋଲି ସ୍ଥିର ହୋଇଥାଏ । ଏହି ମଇଦାନରେ କୋରନ • ଷ୍ଟେଟ୍ ପ୍ରଜାମଣ୍ଡଳର ସଭାପତି ଶୀମାଳଚଣ୍ଡ ଅଯ୍ୟାର ଉପସ୍ଥିତ ଥାନ୍ତି । ହଠାତ୍ ଜଣେ ଗୋରା ସର୍ଜେଣ୍ଟ ମଇଦାନ ଭିତରେ ପଶିଯାଇ ଘୋଷଣା କଲେ ଯେ ସେହି ମଇଦାନ ସାମରିକ କର୍ତ୍ତୃତ୍ୱରେ ତେଣୁ ଲୋକମାନେ ତୁରନ୍ତ ସେଠାରୁ ଚାଲିଯାଆନ୍ତୁ । ସଙ୍ଗେ ସଙ୍ଗେ କୋରନ ପ୍ରଜାମଣ୍ଡଳ ସଭାପତି ଗୋରା ସର୍ଜେଣ୍ଟଙ୍କ ଆଦେଶ ଶ୍ରୀମତୀ ଅରୁଣା ଆସଫଅଲିଙ୍କୁ ଜଣାଇଲେ ଓ ସେଠାରେ ସମବେତ ହୋଇଥିବା ଗ୍ଲେଟ ବାଳକ ବାଳିକାମାନେ ଚାଲିଯାଆନ୍ତୁ ବୋଲି ପ୍ରସ୍ତାବ କଲେ । ବାଳକ ବାଳିକାମାନେ ସଙ୍ଗେ ସଙ୍ଗେ ସେଠାରୁ ଚାଲିଗଲେ । ଜାତୀୟ ପତାକା ଉତ୍ତୋଳନ କରିବା ପୂର୍ବରୁ ଶ୍ରୀମତୀ ଅରୁଣା ଆସଫଅଲି ତାଙ୍କ ଭାଷଣ ଆରମ୍ଭ କରିଦେଲେ । ଏହି ସମୟରେ ପୋଲିସମାନେ ବହୁ ସଂଖ୍ୟାରେ ଗ୍ୟାସ ମୁଖା ପିନ୍ଧି ସେଠାରେ ପହଞ୍ଚିଗଲେ ଓ ଲୋକମାନଙ୍କୁ ଚାଲିଯିବା ପାଇଁ ଆଦେଶ ଦେଲେ । ତେତେବେଳକୁ ଶ୍ରୀମତୀ ଆସଫଅଲି ତାଙ୍କ ଭାଷଣ ଶେଷ କରି ଦେଇଥାନ୍ତି ଓ ଜାତୀୟ ପତାକା ଉଡ୍ଡୀୟ ମାନ ଥାଏ । ଲୁହବୁହା ଗ୍ୟାସ ବ୍ୟବହାର କରିବା ପାଇଁ ସଙ୍ଗେ

ସଙ୍ଗେ ଆଦେଶ ହେଲା । ତେଣେ ସ୍ୱେଚ୍ଛାସେବକମାନେ ସେମାନଙ୍କ କ୍ୟାପ୍ଟେନଙ୍କଠାରୁ ଆଦେଶ ପାଇ ତଳେ ଶୋଇଗଲେ । ଗ୍ୟାସ ବ୍ୟବହାର ବିଫଳ ହେଲା । ଦୁଇ ମିନିଟ୍ ଭିତରେ ପୁଣି ସେମାନେ ଉଠି ପଡ଼ି ସେହି ସ୍ଥାନରେ ଛିଡ଼ା ହୋଇଗଲେ । ପୁଣି ଗ୍ୟାସ ବ୍ୟବହାର କରାଗଲା ମାତ୍ର ଲୋକମାନେ ମୃତ ଭଳି ଶୋଇ ପଡ଼ିଲେ । ଶେଷରେ ପୋଲିସ ବିଫଳ ହୋଇ ଲାଠିମାଡ଼ ଚଳେଇଲେ । ଲାଠିମାଡ଼ରେ ଅନେକ ଲୋକ ଓ ସ୍ୱେଚ୍ଛାସେବକ ଆହତ ହୋଇ ପଡ଼ିଲେ । କୋଚିନ ପ୍ରଜାମଣ୍ଡଳର ସଭାପତିଙ୍କ ଦେହରେ ଦୁଇ ପାହାର ବସିଲା । ସେ ସେଠାରେ ଗିରଫ ନ ହୋଇ କୋଚିନରେ କଂଗ୍ରେସ ବାର୍ତ୍ତା ଶୁଣାଇବା ପାଇଁ ସାଙ୍ଗେ ସାଙ୍ଗେ ସେଠାରୁ ଚାଲିଗଲେ । ପ୍ରଜାମଣ୍ଡଳର ସଭାପତି ଓ ସଂପାଦକ ଏକାଠି ବସି କୋଚିନ ମହାରାଜାଙ୍କ ନିକଟକୁ ଏକ ପତ୍ର ପଠାଇଲେ । ସେହି ପତ୍ରରେ ସେମାନେ ଜଣାଇ ଦେଇଥିଲେ ଯେ କୋଚିନ ମହାରାଜା ବର୍ତ୍ତମାନ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନିଅନ୍ତୁ । ଶ୍ରୀଯୁକ୍ତ ଅୟାରଙ୍କଠାରୁ କଂଗ୍ରେସ ବାର୍ତ୍ତା ଶୁଣିବା ପାଇଁ ଅଗଷ୍ଟ ୧୫ ତାରିଖରେ ତ୍ରିଚୁର ମଇଦାନରେ ବିରାଟ ଜନତା ସମବେତ ହୋଇଥିଲେ । ମାତ୍ର ସେ ପଦେ ହେଲେ କହିଛନ୍ତି କି ନାହିଁ ତାଙ୍କୁ ସଙ୍ଗେ ସଙ୍ଗେ ଗିରଫ କରି ନିଆ ହେଲା । ଜନସାଧାରଣ ପୋଲିସର ଏହି ଆକ୍ରମଣକୁ ନୀରବରେ ସହ୍ୟ ନ କରି ବୀରତ୍ୱପୂର୍ଣ୍ଣ ପ୍ରତିରୋଧ କରିଥିଲେ । ଡାଃ ମେନନ୍ ଓ ଓମ୍ୟାଇ ମଞ୍ଜୁରାପ ଏହି ପ୍ରତିରୋଧ ସଂଗ୍ରାମର ନେତୃତ୍ୱ ନେଇଥିଲେ । ତ୍ରିଚୁର ଓ ଏର୍ଣ୍ଣାକୁଲମ୍‌ର ଛାତ୍ରମାନଙ୍କ କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସନୀୟ । ଏହି ଆନ୍ଦୋଳନରେ କୋଚିନ୍‌ରୁ ୨୫୦ ଜଣ ଗିରଫ ହୋଇଥିଲେ ।

# କାଥିଆଓ୍ୱାଡ ଓ ରାଜକୋଟରେ

ମହାତ୍ମା ଗାନ୍ଧୀଙ୍କ ଜନ୍ମଭୂମି । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ କାଥିଅଓ୍ୱାଡ଼ବାସୀ ଦୁଇଟି ବିଷୟରେ ଆନ୍ଦୋଳନ କରି ଆସୁଥିଲେ । ଗୋଟିଏ ହେଉଛି ଦାୟିତ୍ୱପୂର୍ଣ୍ଣ ଶାସନ ପାଇଁ ଆନ୍ଦୋଳନ କରିବା ଓ ଅନ୍ୟଟି ହେଲା ଯୁଦ୍ଧ ଉଦ୍ୟମରେ ସାହାଯ୍ୟ ନ ଦେବା । ଅଗଷ୍ଟ ବିପ୍ଳବ ବେଳେ କାଥିଅଓ୍ୱାଡବାସୀ କାଥିଅଓ୍ୱାଡ ଓ ଭବନଗର ପ୍ରଭୃତି ଯୁଦ୍ଧ ଉଦ୍ୟମର କେନ୍ଦ୍ରସ୍ଥାନମାନଙ୍କୁ ଜନସାଧାରଣ ବିଶେଷତଃ ଛାତ୍ରମାନେ ଶୋଭାଯାତ୍ରାରେ ଆସି ଯୁଦ୍ଧ ପାଇଁ ଉତ୍ପାଦନ ବନ୍ଦ କରି ଦେବାକୁ ଶ୍ରମିକମାନଙ୍କୁ ଅନୁରୋଧ କରିଥିଲେ । ଠେଠେବେଳକୁ ନେତାମାନେ ଗିରଫ ହୋଇଯାଇଥିଲେ । ଶୋଭାଯାତ୍ରାକାରୀମାନଙ୍କୁ ଏକାଠି ଗିରଫ କରି ଅଟକ ବନ୍ଦୀ କରି ରଖାଯାଇଥିଲା । ଅନେକ ଥର ଲାଠିମାଡ଼ ଓ ଦମନ ଲୀଳା ଚାଲିଥିଲା । ମାତ୍ର ତହିଁରେ ଜନସାଧାରଣଙ୍କ ସାହସ ଭାଙ୍ଗି ଯାଇ ନ ଥିଲା । କର୍ତ୍ତୃପକ୍ଷ ଲୋକଙ୍କ ଉପରେ ଅନେକ ଟଙ୍କା ଜୋରିମାନା କରି ଜବରଦସ୍ତି ଆଦାୟ କରିଥିଲେ । ଏହା ଫଳରେ କଂଗ୍ରେସକର୍ମୀମାନେ ବଡ଼ ଅସୁବିଧା ଭୋଗିଥିଲେ । ପୋର ବନ୍ଦରର ନାବିକ ସମ୍ପ୍ରଦାୟ ଅଗଷ୍ଟ ବିପ୍ଳବରେ ବିଶେଷ ଅଂଶ ଗ୍ରହଣ କରିଥିଲେ । ପ୍ରଥମେ ଲୋକମାନେ ବିକ୍ଷୋଭ ପ୍ରଦର୍ଶନ କରି ଜଣାଇ ଦେଇଥିଲେ ଯେ ଲୋକମାନଙ୍କ ' ଦରକାର ହେଉଥିବା ଜିନିଷ ଗୁଡ଼ିକୁ ବାହାରକୁ ରପ୍ତାନୀ କରାଯିବ ନାହିଁ । ମାତ୍ର କର୍ତ୍ତୃପକ୍ଷ ଏକଥା ପ୍ରତି କର୍ଣ୍ଣପାତ ନ କରିବାରୁ ଲୋକେ ବନ୍ଦର ଅଞ୍ଚଳକୁ ଶୋଭାଯାତ୍ରାରେ ଯାଇ ରପ୍ତାନୀ ଉଦ୍ଦେଶ୍ୟରେ ଜମା ହୋଇଥିବା ଅନେକ ବସ୍ତା ଚିନି ପ୍ରଭୃତି ପାଣିକୁ ଫୋପାଡ଼ି ଦେଇଥିଲେ

ତା ପରେ ଅବସ୍ଥା ଏପରି ହେଲା ଯେ କର୍ତ୍ତୃପକ୍ଷ ଅସ୍ତ୍ର କରି ନ ପାରି ନେତାମାନଙ୍କୁ ଖଲାସ କରି ଦେବାକୁ ବାଧ୍ୟ ହୋଇଥିଲେ । ମାତ୍ର ଅବସ୍ଥା ଶାନ୍ତ ହୋଇ ଯିବାପରେ ପୁଣି ସେମାନଙ୍କୁ ଗିରଫ କରି ନିଆ ହୋଇଥିଲା । ଲୋକମାନେ ସେମାନଙ୍କ ନେତାଙ୍କୁ ଖଲାସ କରିବା ପାଇଁ ଦାବୀ କରି ମହାରାଜାଙ୍କ ବାସଭବନକୁ ଶୋଭାଯାତ୍ରା କରିଯାଇଥିଲେ । ମହାରାଜା ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରି ସେମାନଙ୍କୁ ଅଟକାଇ ଦେଇ ନିକଟବର୍ତ୍ତୀ ଗାଁରୁ ଅଧିକ ପୋଲିସମାନଙ୍କୁ ଅଣାଇଥିଲେ । ଏହି ସମୟରେ ଜଣେ ରଜାଙ୍କ ପକ୍ଷର ଗୁପ୍ତଚର ମହାରାଜାଙ୍କ ଥଇକୁ ଗୋଟିଏ ଟେକା ଫୋପାଡ଼ି ଦେଇଥିଲା । ତେଣୁ ସେତିକିରେ ପୋଲିସ ଓ ଅଧିକାରୀମାନେ ଲୋକଙ୍କ ଉପରେ ଅତ୍ୟାଚାର ଚଳାଇଲେ । ଅନେକ ଲୋକ ଆହତ ହେଲେ ଓ ଅନେକ ଗିରଫ ହୋଇ ଗଲେ । ଏମିତି ହେଲା ଯେ କେତେକ ଶ୍ରେଣୀର ଲୋକ ଘରୁ ବାହାରି ପାରି ନ ଥିଲେ । ଦୁଇ-ତିନି ମାସ ଭିତରେ ଦମନଲୀଳା ଫଳରେ ତାଙ୍କ ଅତ୍ୟାଚାରରେ ଆନ୍ଦୋଳନ ଟିକିଏ ଦବି ଯାଇଥିଲା । ଟେଲିଗ୍ରାଫ ଓ ଟେଲିଫୋନ ତାର କଟା, ପୋଷ୍ଟବାକ୍ସ ଲୁଟ ରେଲ ଓଲଟାଇବା ଓ ପୋଲ ଭାଙ୍ଗି ଦେବା ପ୍ରଭୃତି ଅନେକ ଦିନ ପର୍ଯ୍ୟନ୍ତ ଚାଲିଥିଲା ।

## କୋଲ୍ହାପୁରରେ

୧୯୪୨ ସ୍ୱାଧୀନତା ଆନ୍ଦୋଳନରେ କୋଲ୍ହାପୁର ଗଡ଼ଜାତର ଜନସାଧାରଣ ଗୌରବପୂର୍ଣ୍ଣ ଅଂଶ ଗ୍ରହଣ କରିଛନ୍ତି । ନେତାମାନଙ୍କ ଗିରଫ ସମ୍ବାଦ ପାଇ ସମଗ୍ର କୋଲ୍ହାପୁରରେ ଲୋକେ ଆପଣାଛାଏଁ ହରତାଳ କରିଥିଲେ ବହୁ ସଭା ଓ ଶୋଭା-ଯାତ୍ରାରେ ପ୍ରତିବାଦ ଜଣାଇ ଦେଇଥିଲେ । ମିଲର ଶହ ଶହ

ଶ୍ରମିକ ଏହି ପ୍ରତିବାଦରେ ଯୋଗ ଦେଇଥିଲେ । ଅଗଷ୍ଟ ୧୬ ତାରିଖ ଦିନ କୋହ୍ଲାପୁର ପ୍ରଜା ସମ୍ମିଳନୀ ୨୦ ହଜାର ଲୋକଙ୍କ ଏକ ସଭାରେ ତୁରନ୍ତ କୋହ୍ଲାପୁରରେ ସ୍ୱାୟତ୍ତଶାସନ ଲୋକଙ୍କୁ ଦେଇ ଦେବା ପାଇଁ ଦାବୀ କରିଥିଲେ । ଲୋକଙ୍କ ହାତକୁ ଦାୟିତ୍ୱପୂର୍ଣ୍ଣ ଶାସନ ଦେଇ ଦେବା ପାଇଁ ଦାବୀ କରି ଦଳେ ପ୍ରତିନିଧି କୋହ୍ଲାପୁର ମହାରାଜାଙ୍କୁ ଭେଟିଥିଲେ । ମାତ୍ର ତାର କିଛି ଫଳ ହେଲା ନାହିଁ । ପ୍ରଜା ସମ୍ମିଳନୀକୁ ବେଆଇନ ଘୋଷଣା କରି ପ୍ରଜା ପରିଷଦର ସଭାପତି ଓ ୨୦ଜଣ ବିଶିଷ୍ଟ କର୍ମୀଙ୍କୁ ଗିରଫ କରି ନିଆ ହୋଇଥିଲା । ମାତ୍ର ସଭା ସମିତି ଓ ପ୍ରତିବାଦ ଚାଲିଥାଏ । ପ୍ରଜା ପରିଷଦ ଅକ୍ଟୋବର ୧୮ ତାରିଖ ଦିନ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିବାକୁ ନିଷ୍ପତ୍ତି କରି ଦେଲେ । ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ସଭା ସମିତି ଓ ଶୋଭାଯାତ୍ରା ନିଷେଧ କରି ଏକ ଅର୍ଡିନାନ୍ସ ଜାରି ହୋଇଥିଲା । ଛାତ୍ରମାନେ ଏହି ଆନ୍ଦୋଳନରେ ସହଯୋଗ କରିଥିଲେ । ଏ ସମ୍ପର୍କରେ ଅନେକ ପ୍ରଚୁର ପତ୍ର ପ୍ରକାଶିତ ହୋଇଥିଲା । କୋହ୍ଲାପୁର ସଂବାଦପତ୍ର-ମାନଙ୍କ ଉପରେ କର୍ତ୍ତୃପକ୍ଷ ନାନାପ୍ରକାର କଟକଣା ଜାରି କରିଲେ । କୋହ୍ଲାପୁର ଜନତା ୨୬ଟା ଗ୍ରା ଚାଉଡ଼ି, ୪ଟା ଡାକ ବଙ୍ଗଳୋ, ୩ଟା ରେଲ୍ ଷ୍ଟେସନ ଓ ଡଜନଟା ପୋଷ୍ଟଅଫିସ ଉପରେ ଚଢ଼ାଉ କରିଥିଲେ । ୫ଟା ଜାଗାରେ ଟେଲିଗ୍ରାଫ ତାର କାଟି ଦେଇଥିଲେ ୨ଟା ପୋଷ୍ଟବ୍ୟାଗ୍ ଲୁଟ କରି ନେଇଥିଲେ । ୩ଟା ସ୍କୁଲ୍ ଓ ୩ଟା ଡାକ ମଠର ଉପରେ ଚଢ଼ାଉ କରିଥିଲେ । ଗାଟୋଟି ଓ ବର୍ମୀ ଖଜଣାମାନ ଲୁଟ କରି ନେଇ ଥିଲେ । ୮ଟା ଜାଗାରେ ବୋମା ବିସ୍ଫୋରଣ ହୋଇଥିଲା । ଏହି ଆନ୍ଦୋଳନ ସମ୍ପର୍କରେ ୨୩୦-ଜଣଙ୍କୁ ବିଭିନ୍ନ ଅଭିଯୋଗରେ ବନ୍ଦୁର କରାଯାଇଥିଲା କୋହ୍ଲା-

ସୁରଟ ଜିଲ୍ଲା ୮୦ଟି ଗାଁରୁ ୧୦୦୦ ଜଣଙ୍କୁ ଗିରଫ କରାଯାଇଥିଲା ଓ ୫୮୯,୫୫୦ଙ୍କ ସମ୍ପତ୍ତି ଜୋରିମନା ଜାରି କରାଯାଇଥିଲା । କର୍ମୀମାନେ ୫ବର୍ଷ ଠାରୁ ୧୫ବର୍ଷ ପର୍ଯ୍ୟନ୍ତ ଜେଲଦଣ୍ଡ ଆଦେଶ ପାଇଥିଲେ । ଏପର୍ଯ୍ୟନ୍ତ ଅନେକ କର୍ମୀ ଜେଲରେ ରହିଛନ୍ତି । କୋହ୍ଲାପୁର ପ୍ରଜା ପରିଷଦର ସଂପାଦକ ଶ୍ରୀ ରତ୍ନାପାକୁମ୍ବାର ଏପର୍ଯ୍ୟନ୍ତ ଫେରାର ହୋଇ ରହିଛନ୍ତି ଓ ତାଙ୍କୁ ଧରେଇ ଦେବା ପାଇଁ ୨୦୦୦ଟଙ୍କା ପୁରସ୍କାର ଘୋଷଣା କରାଯାଇଛି । ମୋଟରେ ଆନ୍ଦୋଳନ ବେଳେ ୨୦ଜଣ ଫେରାର ହୋଇଥିଲେ । ସରକାରର ମୋଟରେ ୫୮୧,୭୧୭ଙ୍କାର କ୍ଷତି ହୋଇଥିଲା । ଏହି ଆନ୍ଦୋଳନରେ ୧୭ ଜଣ ବିଶିଷ୍ଟ କର୍ମୀ ଜୀବନ ହରାଇଛନ୍ତି ।

## ଶହିଦ୍ ଲକ୍ଷ୍ମଣ ନାୟକର ଜନ୍ମଭୂମି ଉତ୍କଳରେ

ଉତ୍କଳ ଆଜି ଖାଲି ଧର୍ମପଦର ଜନ୍ମଭୂମି ବୋଲି ଗର୍ବ କରୁନାହିଁ, ଉତ୍କଳ ଆଜି ବହୁ ସହିଦଙ୍କର ଜନ୍ମଭୂମି । ଉତ୍କଳ ବୀର ଲକ୍ଷ୍ମଣ ନାଏକଙ୍କର ଜନ୍ମଭୂମି, ବାଧି ମାହାଲାଙ୍କର ଜନ୍ମଭୂମି । ସେହିମାନେ ଆଜି ଉତ୍କଳବାସୀଙ୍କୁ ଗୌରବାନ୍ୱିତ କରିଛନ୍ତି, ଭାରତର ମୁକ୍ତି ଇତିହାସରେ ଉତ୍କଳର ମୂର୍ତ୍ତି ସମୁଜ୍ଜ୍ୱଳ କରିଛନ୍ତି । ସେମାନେ ଶିକ୍ଷିତମାନଙ୍କ ପରି ଉଦ୍ଦୀପନାମୟୀ ବକ୍ତୃତା ହୁଏତ ଶୁଣି ନ ଥିଲେ, ଉତ୍ତେଜନାମୟୀ ଜାତୀୟ ସଙ୍ଗୀତ ପଢ଼ି ନ ଥିଲେ କିନ୍ତୁ ତଥାପି ଜାତିର ସଙ୍କଟ ମୁହୂର୍ତ୍ତରେ ସେମାନେ ଟିକିଏ ହେଲେ ପଛଘୁଞ୍ଚା ନ ଦେଇ ମୁକ୍ତିର ମଶାଲ ଧରି ସମଗ୍ରଜାତିକୁ ବାଟକଢ଼େଇ ଦେଲେ ଓ ଅକାତରରେ ନିଜର ରକ୍ତ ଢାଳି ଦେଇ ଏ ଜାତିକୁ ଧନ୍ୟ କରି ଦେଇ ଗଲେ । ସେମାନେ ତେଣେ ଭାରତ ବାହାରେ ଇମ୍ଫାଲ୍ ରଣକ୍ଷେତ୍ରରେ ନେତାଜୀ

ସୁଭାଷଚନ୍ଦ୍ରଙ୍କ ନେତୃତ୍ୱରେ ଓଡ଼ିଆ ସୈନିକମାନେ ଘାସପତ୍ର ଖାଇ ଅଧୁନିକ ଅସ୍ତ୍ରଶସ୍ତ୍ରବଳରେ ସୁସଜ୍ଜିତ ଇଂରେଜ ସୈନ୍ୟଙ୍କ ବନ୍ଧୁକରେ ଲଢ଼ିବାକୁ ଶିକ୍ଷା ପାଉଥିବାବେଳେ ଉତ୍କଳର ଭାଇପଡ଼ା, ଲୁଣିଆ, ପରଜଙ୍ଗ, ମାଥିଲି ରଣକ୍ଷେତ୍ରରେ ଶତ୍ରୁର ଗୁଳି, ବନ୍ଧୁକ ଓ ସଙ୍ଗୀନ ମୁନ ବନ୍ଧୁକରେ ବୀରତ୍ୱସହ ସଂଗ୍ରାମ କରି ଇତିହାସ ରଚନା କରି ନେଇଥିଲେ । ସେ ସଂଗ୍ରାମ, ସେ ଅସ୍ତ୍ରବଳ, ନୈତିକ ସାହସ ଆଜି ଉତ୍କଳବାସୀଙ୍କ ଅମୂଲ୍ୟ ସମ୍ପଦ । ତାକୁ ଭୁଲିବ କିଏ ?

ଅଗଷ୍ଟ ତାରିଖରେ ବମ୍ବେ, ଲକ୍ଷ୍ନୌ, ପୁନା ପାଟନା ସହର କର ବା ମର ଧ୍ୱନିରେ ଯେତେବେଳେ ପ୍ରକମ୍ପିତ ହୋଇ ଉଠେ, ପ୍ରତ୍ୟେକ ଭାରତବାସୀ ଯେତେବେଳେ ନିଜର ଜୀବନ ଓ ସର୍ବସ୍ୱ ଦେଇ ସେନାପତିଙ୍କ ଆହ୍ୱାନ ଶୁଣେ, ଉତ୍କଳବାସୀ ସେତେବେଳେ ସୁଖଶଯ୍ୟାରେ ଶୋଇ ନ ଥିଲେ । ଉତ୍କଳର ଛାତ୍ର ଓ ଯୁବକ ତାଙ୍କ ବମ୍ବେ ଓ ଲକ୍ଷ୍ନୌ ସାଥୀଙ୍କ ପରି ଅଗଷ୍ଟ ବିପ୍ଳବରେ ନିଜର ଆତ୍ମତ୍ୟାଗର ଆଦର୍ଶ ଓ ଦେଶପ୍ରୀତିର ପ୍ରମାଣ କରିବାକୁ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ସେମାନେ ତାଙ୍କ ଉତ୍ସାହ, ଉତ୍ତେଜନାକୁ କି ଭଳି ରୂପଦେବେ ପ୍ରଥମେ ତାର କୌଣସି ଉପାୟ ପାଇଲେ ନାହିଁ । ସେମାନଙ୍କ ପାଇଁ କୌଣସି ସଂଗଠନ ନ ଥିଲା । କଂଗ୍ରେସ ନେତାମାନେ ଗୋଟି ଗୋଟି କରି ସେମାନଙ୍କ ଆଗରେ ଶତ୍ରୁର କାରାଗାରକୁ ଚାଲିଯାଉଛନ୍ତି କିନ୍ତୁ ସେମାନେ କିଛି କରି ପାରୁ ନାହାନ୍ତି । ସେମାନେ ଶେଷରେ ନିଜ ଭିତରେ ନେତୃତ୍ୱ ସୃଷ୍ଟି କଲେ । ତେତେବେଳେ ରାଜଧାନୀ କଟକ ସହର ପ୍ରତି ସମସ୍ତଙ୍କର ଦୃଷ୍ଟିଥାଏ । କଟକ ସହରର ଛାତ୍ରମାନେ ଅଗଷ୍ଟ ୧୧ ତାରିଖରେ ଧର୍ମଘଟ କଲେ ଓ ସେହି ଦିନ ଗୌରୀଶଙ୍କର ପାର୍କରେ

ଏକ ବିରାଟ ଛାତ୍ର ଓ ଜନସାଧାରଣଙ୍କର ସଭା ହେଲା । ଏହି ସଭାରେ ଛାତ୍ର ଓ ତଥା ଜନସାଧାରଣଙ୍କୁ ଅଗଷ୍ଟ ବିପ୍ଳବ ପାଇଁ ଏକ କର୍ମପନ୍ଥା ଜଣାଇ ଦିଆ ହୋଇଥିଲା । ସଭା ଶେଷରେ ସହରର ସ୍ଥାନେ ସ୍ଥାନେ ଏକ ଶୋଭାଯାତ୍ରା ହେଲା; ଓଡ଼ିଶାରେ ଅଗଷ୍ଟ ବିପ୍ଳବର ଏହି ହେଲା ପ୍ରଥମ ସୂଚନା । ତେତେବେଳକୁ ଓଡ଼ିଶାର ବିଶିଷ୍ଟ କଂଗ୍ରେସନେତା ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କ ସଙ୍ଗେ ଗିରଫ ହୋଇ ଅହମଦ ନଗର ଦୁର୍ଗରେ ବନ୍ଦୀ ହୋଇ ସାରିଲେଣି, ଏଣେ ଓଡ଼ିଶାରେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ଅଗ୍ରଣୀ ହରିହର ଦାସ ଓ ଶ୍ରୀଯୁକ୍ତ ରାଧାକୃଷ୍ଣ ବିଶ୍ୱାସରାୟ ପ୍ରମୁଖ ନେତୃବର୍ଗ ଗିରଫ ହୋଇ ଓଡ଼ିଶାର ବିଭିନ୍ନ କାରାଗାରରେ ବନ୍ଦୀ ହୋଇଗଲେଣି । ଓଡ଼ିଶାର ଉତ୍ୟକ୍ତ, ଉତ୍ତେଜିତ, କର୍ମଚଞ୍ଚଳ ଛାତ୍ର ଓ ଜନସାଧାରଣଙ୍କୁ ନେତୃତ୍ୱ ଦେବାକୁ କୌଣସି ଅନୁଷ୍ଠାନ ନ ଥିଲା । ଏହି ଅବସ୍ଥାରେ ରେଭେନ୍ସା କଲେଜର ଛାତ୍ରମାନେ ଆମଲାତନ୍ତ୍ରର କଳକୁ ଅଚଳ କରିବାର ପ୍ରଥମ ପ୍ରୟାସ କରିଥିଲେ । କଲେଜ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ସରକାରୀ ଚାକିରୀରୁ ଇସ୍ତଫା ଦେବା ପାଇଁ ନିବେଦନ କରିବାକୁ କଲେଜ ହତା ଭିତରେ ଅଗଷ୍ଟ ୧୪ ତାରିଖ ଦିନ ଗୋଟିଏ ବିରାଟ ଛାତ୍ରସଭାରେ ସ୍ଥିର ହେଲା ଓ ସେହି ଅନୁସାରେ ସମସ୍ତେ ଯାଇ କଲେଜ ଅଫିସରେ ପହଞ୍ଚିଲା ବେଳକୁ ଅଫିସର କାଗଜପତ୍ର ନିଆଁରେ ଜଳୁଛି । କୌଣସି ଅଧ୍ୟାପକ ବା କିରାଣୀ ଦେଖା ନାହାନ୍ତି ଛାତ୍ରମାନେ ସମସ୍ତେ ଅଫିସ କାଗଜପତ୍ର ଅଲମାରି, ଟେଲିଫୋନ ପୋଡ଼ିବାରେ ଲାଗିଗଲେ । ଦମକଳ ଆସି ପହଞ୍ଚିଲା ବେଳକୁ କାମ ସରି ଯାଇ

ଥିଲ ଓ ପୋଲିସଉଦ୍ୟାନ ପହଞ୍ଚିଲ ବେଳକୁ ସେଠି କୋଟିଏ ହେଲେ ଛାତ୍ର ନ ଥିଲେ । ତା ପରଠୁ ଛାତ୍ରଙ୍କ ଅଖିଗ ଖୁଜା ଗିରଫ ଓ ଦମନଲୀଳା । କମ୍ୟୁନିଷ୍ଟ ଛାତ୍ର ସଂଘ ତଥା ଜାତୀୟତାବାଦୀ ଛାତ୍ରର ବିଶିଷ୍ଟ ଛାତ୍ରକର୍ମୀମାନଙ୍କୁ ସଙ୍ଗେ ସଙ୍ଗେ ଗିରଫ କରି ନିଆ ହେଲା, ଅଥଚ କଂଗ୍ରେସ ଛାତ୍ର କର୍ମୀମାନେ ସେତେବେଳେ ସ୍ୱଚ୍ଛନ୍ଦ ଭାବରେ ଆନ୍ଦୋଳନର ବିରୋଧରେ ପ୍ରଚାର କରୁଥିଲେ । ଏହାପରେ ପ୍ରତିଦିନ ଗିରଫ ଚାଲିଥାଏ । କଟକରେ ଜଗତ୍‌ସିଂହପୁର ଓ ବାଲେଶ୍ୱରର ଛାତ୍ରମାନେ ହରତାଳ ଓ ଶୋଭାଯାତ୍ରା କରି ଅଗଷ୍ଟ ବିପ୍ଳବର ବାର୍ତ୍ତା ପ୍ରଚାର କରିଥିଲେ ଓ ଦଳେ ଦଳେ ଗିରଫ ହୋଇ ଯାଉଥିଲେ ।

ଏହାପରେ ଅଗଷ୍ଟ ବିପ୍ଳବର ବାର୍ତ୍ତା ଓଡ଼ିଶାର ଗ୍ରାମେ ଗ୍ରାମେ ବ୍ୟାପିଗଲା ଓ ନେତାମାନଙ୍କ ଗିରଫରେ ସ୍ୱତଃସ୍ଫୂର୍ତ୍ତ ପ୍ରତିବାଦ ସଭା ଓ ଶୋଭାଯାତ୍ରା ଏବଂ ଛାତ୍ରଧର୍ମଘଟ ଚାଲିଥିଲା । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀମତୀ ରମା ଦେବୀଙ୍କ କର୍ମକେନ୍ଦ୍ର ବାରିରେ ଅଗଷ୍ଟ ବିପ୍ଳବର ଏକ ବାସ୍ତବ ରୂପ ପ୍ରକାଶ ପାଇଲା ଓ ସମଗ୍ର ଓଡ଼ିଶାବାସୀ ତହିଁରୁ ପ୍ରେରଣା ପାଇଥିଲେ । ଶ୍ରୀଯୁକ୍ତ ଚୌଧୁରୀଙ୍କ ନେତୃତ୍ୱରେ ପରିଚାଳିତ ବାରି ମୌଳିକ ବିଦ୍ୟାଳୟର ଛାତ୍ରମାନେ ଅତ୍ୟନ୍ତ କୃତିତ୍ୱ ଓ ସାହସର ସହିତ ଏଠାରେ ବିପ୍ଳବର ରୂପ ଦେଇଥିଲେ । ଏହି ବିଦ୍ୟାଳୟର ଛୋଟ ଛୋଟ ପିଲାମାନେ ଗାଁ ଭିତରକୁ ଯାଇ ଲୋକମାନଙ୍କୁ ଅଗଷ୍ଟ ବିପ୍ଳବର ବାର୍ତ୍ତା ଶୁଣାଇ ଥିଲେ ଓ ଲୋକଙ୍କୁ ପଞ୍ଚାଏତ ଗଢ଼ି ସ୍ୱାଧୀନ ଭାବରେ ଚଳିବାକୁ ଓ ଶାନ୍ତି ଶୃଙ୍ଖଳା ରକ୍ଷା କରିବାକୁ ବୁଝାଇଥିଲେ । ଏହି ବିଦ୍ୟାଳୟର କୋଟିଏ ଛାତ୍ର ଏମାସ ଜେଲ ଦଣ୍ଡ ଭୋଗିଥିଲେ ଓ ଅନ୍ୟ କେତେ ବାଡ଼ିମାଡ଼ରେ ମୁନିଆରେ ଭୂପାଶୀଇ ଆହତ ହୋଇଥିଲେ । ଅଗଷ୍ଟ

୧୭ ତାରିଖ ଦିନ ବଗ୍ର ଅଞ୍ଚଳର କେତେକ କଂଗ୍ରେସ କର୍ମୀ କାଇପଡ଼ା ପୋଷ୍ଟଅଫିସକୁ ଯାଇ ସମସ୍ତ କାଗଜପତ୍ର ସେମାନଙ୍କୁ ଦେଇ ଦେବା ପାଇଁ ପୋଷ୍ଟଅଫିସ କର୍ତ୍ତୃପକ୍ଷଙ୍କୁ ପ୍ରକାଶ୍ୟ ଭାବରେ କହିଥିଲେ ଏବଂ ପୋଷ୍ଟ ମାଷ୍ଟର ସବୁ କାଗଜପତ୍ର ଓ ମନିଅର୍ଡର ଆଦି ସେମାନଙ୍କୁ ଦେଇ ଦେଇଥିଲେ । ସେହି କଂଗ୍ରେସ କର୍ମୀମାନେ ତାପରେ ଯାହାର ଯାହାର ମନିଅର୍ଡର ଥିଲା ସେମାନଙ୍କୁ ଦେଇ ସାରି ଅନ୍ୟ ସବୁ କାଗଜପତ୍ର ନଷ୍ଟ କରି ଦେଇଥିଲେ । ପୋଷ୍ଟମାଷ୍ଟରଙ୍କ "ବେଆଇନ" କାମର ତଦନ୍ତ କରି ତାଙ୍କୁ ଦଣ୍ଡ ଦେବାକୁ ୨୫ ତାରିଖ ଦିନ ଜାଜପୁରର ସେକଣ୍ଡ ଅଫିସର ତଥା ପୋଲିସ କର୍ତ୍ତୃପକ୍ଷ ସଶସ୍ତ୍ର ପୋଲିସ ବାହିନୀ ସହ କାଇପଡ଼ାରେ ପହଂଚି ଗଲେ । ସରକାରୀ ଅଫିସରମାନେ କଭଳ ଦଣ୍ଡ ଦେବେ ଏବଂ ସେମାନେ ସେହି ଅଭିଯୁକ୍ତ ଆସାମୀଙ୍କୁ କିଛି ସାହାଯ୍ୟ କରି ପାରିବେ କି ନାହିଁ ତାହା ଦେଖିବାକୁ ଆଖ ପାଖ କେତୋଟି ଗାଁର ଲୋକେ ରୁଣ୍ଡ ହୋଇଥିଲେ । ଏହି ସମୟରେ ସେକଣ୍ଡ ଅଫିସର ଗୁଳି ମାରି ଦେବା ଭୟ ଦେଖାଇ ଲୋକମାନଙ୍କୁ ଚାଲି ଯିବାକୁ ଆଦେଶ ଦେଲେ । ୨ଜଣ ଲୋକ ସେଠାରେ ଅବିଚଳିତ ହୋଇ ରହିଲେ ଓ ଅନ୍ୟମାନେ ଚାଲିଗଲେ । ଶ୍ରୀହରିବନ୍ଧୁ ଚନ୍ଦ୍ରା ପୋଲିସ ଦଳ ସଙ୍ଗେ ଯାଇ ଗିରଫ କରାଯାଇ ଥିବା ଭାଇଙ୍କୁ ଛାଡ଼ି ଦେବାକୁ ନିବେଦନ କଲେ ଓ ଫଳରେ ପୋଲିସ ଅଫିସରଙ୍କଠାରୁ ମାରତ୍ମକ ଭାବରେ ଧକ୍କା ଓ ମାଡ଼ ଖାଇଥିଲେ । ସେଠାରୁ ଚାଲି ଯାଇଥିବା ଲୋକମାନେ ଅନ୍ୟାସପୁରଠାରେ ଏକାଠି ହେଲେ ଓ ସେମାନଙ୍କ ଭିତରୁ ୩ ଜଣ ଆଗରୁ ପୋଲିସ ଗିରଫ ହୋଇ-ଥିବା ଲୋକଙ୍କୁ ଅନୁରୋଧ କରିବାରୁ ସଙ୍ଗେ ସଙ୍ଗେ ଗିରଫ ହୋଇଗଲେ । କେତେବେଳକୁ ଲୋକେ ପୋଲିସଙ୍କ ପାଖକୁ

ଲଗି ଅସିଲେଣି ଏହା ଦେଖି ପୋଲିସ ଅଫିସର ଲୋକଙ୍କଠାରୁ କିଛି ନ ଶୁଣି ଗୁଳି ମାରିବାକୁ ଅଦେଶ ଦେଲେ । ୮୦ ଫୁଟ ଦୂରରୁ ଗୁଳି ଫଏର ହେଲ । ଶ୍ରୀ ହରବନ୍ଧୁ ପଣ୍ଡା ଓ ଶ୍ରୀ ମାୟାଧର ଭୂୟାଁ ଗିରଫ ହୋଇଥିବା ତେତେ ଗ୍ରାମବାସୀଙ୍କୁ ପୋଲିସଙ୍କଠାରୁ ଛଡ଼ାଇ ଅଣିବାକୁ ଚେଷ୍ଟା କରିଥିଲେ । ପୋଲିସ ସେ ଦୁଇଜଣଙ୍କୁ ସଙ୍ଗୀନ ମୂନରେ ଅକ୍ରମଣ କରିଥିଲେ । ଶାନ୍ତ ମଲିକ, ସାନନ୍ଦ ସ୍ୱାଇଁ, ନିଧି ସାମଲ, ରାମଚନ୍ଦ୍ର ଜେନା ଓ ସୁପ୍ରଭାତ ଦେ ଗୁଳି ମାଡ଼ରେ ଅହତ ହୋଇଥିଲେ ଏବଂ ସେମାନଙ୍କ ଭିତରେ ପ୍ରଥମୋକ୍ତ ୨ଦୁଇଜଣ ସଙ୍ଗେ ସଙ୍ଗେ ଜୀବନ ହରାଇଥିଲେ । ତାପରେ ଗୋଟିଏ ପିଲା ଓ ଜଣେ ସ୍ତ୍ରୀଲୋକ ଛଡ଼ା ଅନ୍ୟମାନେ ସେଠାରୁ ଚାଲିଗଲେ । ପିଲାଟି ସବୁବେଳେ ହସି ହସି କଥାବାର୍ତ୍ତା କରୁଥାଏ । ସରକାରୀ ଦଳ ଅହତ ବ୍ୟକ୍ତିଙ୍କୁ ନ ଗଣି ମଧ୍ୟ ସେଠାରୁ ଚାଲିଗଲେ । ବାଞ୍ଛାରପୁର ଥାନାର ପୋଲିସ ସବ୍‌ଇନ୍‌ସପେକ୍ଟର ସେତେବେଳେ ଲୁଚି ରହିଥିବା ଶ୍ରୀ ଧ୍ରୁବଚରଣ ରାୟଙ୍କ ଦାଦାଙ୍କୁ ଗିରଫ କରି ନେଇ ଯାଉଥିବାବେଳେ ତାଙ୍କର ୭ ବର୍ଷର ଗୋଟିଏ ଝିଅ ତାଙ୍କ ସଙ୍ଗେ ଚାଲିଥିଲା ମାତ୍ର ବାଟରେ ଗୋଟିଏ ଖାଲରେ ପାଣି ଭିତରେ ବୁଡ଼ି ଯାଇ ମରିଗଲା ଅଥଚ ପୋଲିସ ତା ପ୍ରତି କିଛି ଦୃଷ୍ଟି ଦେଲେ ନାହିଁ । ବାରିର ଏହି ଅନ୍ଦୋଳନରେ ସ୍ତ୍ରୀଲୋକମାନେ ବିଶେଷ ଭାଗ ନେଇଥିଲେ । ଶ୍ରୀମତୀ ରମା ଦେବୀଙ୍କ ନେତୃତ୍ୱରେ ଶିକ୍ଷା ପାଇଥିବା ଶ୍ରୀମତୀ ମଙ୍ଗଳା ଦେବୀ ବାରି 'ସେବାଘର' ଅଶ୍ରମକୁ ପୋଲିସଙ୍କ ହାତକୁ ନ ଦେବା ପାଇଁ ଚେଷ୍ଟା କରି ଗିରଫ ହୋଇଥିଲେ ଓ ଅନ୍ୟମାନେ ମଧ୍ୟ ସେହି ଭଳି ଗିରଫ ହୋଇଥିଲେ, ବାରି ମୌଳିକ ବିଦ୍ୟାଳୟର ୨୭ଜଣ ଶିକ୍ଷକଙ୍କ ଭିତରୁ ୧୭ଜଣ ଗିରଫ

ହୋଇଥିଲେ । ବସ୍ତି ସମେତ ୪ଟା ଗାଁରୁ ୫୦୦୦ ଟଙ୍କା ସମୂହ ଜୋରିମାନା ସଶସ୍ତ୍ର ପୋଲିସଙ୍କ ସାହାଯ୍ୟରେ ଆଦାୟ କରି ଯାଇଥିଲା ଓ ସେଥିପାଇଁ ଲୋକଙ୍କୁ ନାନା ଧମକ ଚମକ ଓ ଜୁଲୁମ କରାଯାଇଥିଲା । ଏହି ଅଞ୍ଚଳରୁ ୧୨ ଜଣ ସ୍ତ୍ରୀଲୋକଙ୍କ ସମେତ ମୋଟରେ ୮୪ ଜଣ ଗିରଫ ହୋଇଥିଲେ । ୩୨ ଜଣ ଅଟକବନ୍ଦୀ ହୋଇଥିଲେ ଓ ୫୨ ଜଣ ଦଣ୍ଡିତ ହୋଇଥିଲେ ।

ଏହି ସମୟରେ ପୋଲିସର ଦୃଷ୍ଟି ଅନ୍ତରାଳରେ ଓଡ଼ିଶାର ବିଶିଷ୍ଟ କଂଗ୍ରେସ ସାମ୍ୟବାଦୀ କର୍ମୀ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ କାର୍ଯ୍ୟ ତତ୍ପରତା ଓଡ଼ିଶାରେ ଅଗଷ୍ଟ ବିପ୍ଳବକୁ ସୁଗଠିତ ଓ ସୁପରିଚାଳିତ କଲା । ଶ୍ରୀଯୁକ୍ତ ଦ୍ୱିବେଦୀ କଟକ ସହରରେ ରହି କେତେକ ନିଷ୍ଠାପର ଛାତ୍ର, ଶିକ୍ଷକ ଓ ଯୁବକଙ୍କ ସହ-ଯୋଗିତାରେ ଉତ୍କଳର ବିଭିନ୍ନ ଜିଲ୍ଲା, ଗାଁଗହଳ ଓ ଗଡ଼ଜାତ-ମାନଙ୍କ ସଙ୍ଗେ ସଂପର୍କ ସ୍ଥାପନ କରି ଭାରତର ଅନ୍ୟାନ୍ୟ ଅଂଶର ଅଗଷ୍ଟ ବିପ୍ଳବର ବାର୍ତ୍ତା ଉତ୍କଳବାସୀଙ୍କୁ ଦେବା ସଙ୍ଗେ ସଙ୍ଗେ ଭାରତର ସମସ୍ତ ଅଞ୍ଚଳକୁ ଉତ୍କଳର ବିପ୍ଳବ କାହାଣୀ ଯୋଗାଇ ଦେଉ ଥିଲେ । ତାଙ୍କର ଉଦ୍ୟମରେ ଓଡ଼ିଶାରେ ପ୍ରତିରୋଧ ଆନ୍ଦୋଳନ ପୁନରୁଜ୍ଜୀବିତ ହୋଇ ଉଠିଥିଲା । ସେ ଗିରଫ ହୋଇଯିବା ପର୍ଯ୍ୟନ୍ତ ଓ ତା ପରେ ମଧ୍ୟ ଅନେକ ଦିନ ଲୋକଙ୍କ ଭିତରେ ପ୍ରତିରୋଧ ଭାବ ଅକ୍ଷୁଣ୍ଣ ହୋଇ ରହିଥିଲା । ଶ୍ରୀଯୁକ୍ତ ଦ୍ୱିବେଦୀଙ୍କ ସହକର୍ମୀ ଶ୍ରୀ ନିଶାମଣି ଖୁଣ୍ଟିଆ ପ୍ରମୁଖ ତିର୍ତ୍ତୋଲ ଥାନାରେ ଅଗଷ୍ଟ ବିପ୍ଳବର ବାର୍ତ୍ତା ପ୍ରଚାର କରିଥିଲେ । ଅଗଷ୍ଟ ଶେଷ ସପ୍ତାହ-ଠାରୁ ସେପ୍ଟେମ୍ବର ତା ୨ ରିଖ ଭିତରେ ତିର୍ତ୍ତୋଲ ଥାନାର ଜଗନ୍ନାଥ ପୁର ଓ ସଅଁରା ଡାକବଙ୍ଗଳା କାଗଜପତ୍ର ପୋଡ଼ା ପୋଡ଼ି, ନୂଆପଡାରେ ଇଲକାର ଅଫିସ କାଗଜ ପତ୍ର ପୋଡା ପୋଡ଼ି

ଓ ଭାରତଚ୍ଛା ହୋଇଥିଲା । ଜନତା ଶ୍ରୀ ବୃନ୍ଦାବନ ନାଏକଙ୍କୁ ପୋଲିସଙ୍କଠାରୁ ଛଡ଼ାଇ ନେଇଥିଲେ । ଏହାପରେ ସଶସ୍ତ୍ର ପୋଲିସ ଆସି ଜୁଲମ ଚଳେଇଲେ ଓ ୫ଟି ଗାଁରୁ ୩୫୦୦ ଟଙ୍କା ସମୁହ ଜୋରିମାନା ଅଦାୟ କରିଥିଲେ । ମୋଟରେ ୪୦ ଜଣ ଗିରଫ ହୋଇଥିଲେ । ଏରସମା ଥାନାର ଜନସାଧାରଣ ଶ୍ରୀ ଗୌରିଶ୍ୟାମ ନାଏକଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲେ । ସେପ୍‌ଟେମ୍ବର ତା୨୭ ରିଖ ଦିନ ତାଙ୍କ ନେତୃତ୍ୱରେ ୩ ହଜାର ଲୋକ ଏରସମା ଥାନା ଆକ୍ରମଣ କରିଥିଲେ । ଥାନାର ପୋଲିସ ଆକ୍ରମଣକାରୀ ଜନତାକୁ ସମସ୍ତ ଅସ୍ତ୍ର ଶସ୍ତ୍ର ସମର୍ପଣ କରି ଦେଇଥିଲେ । ଜନତାଙ୍କର ଏହି ବିଜୟରେ ପୋଲିସ କ୍ରୋଧାନ୍ଧ ହୋଇ ନାନା ଜୁଲମ ଆରମ୍ଭ କରି ଦେଇଥିଲେ । ଏଠାରୁ ୨୫ ଜଣ ଗିରଫ ହୋଇଥିଲେ ।

ଅଗଷ୍ଟ ବିପ୍ଳବବେଳେ ଯାଜପୁରର ଜନତା ସେହି ସ୍ମରଣୀୟ ଘଟଣାକୁ କେବେ ଭୁଲିଯାଇ ପାରିବେ ନାହିଁ । ଏହି ଅଞ୍ଚଳର ବିଶିଷ୍ଟ କର୍ମୀ ଶ୍ରୀ ପଦ୍ମନାଭ ରାୟଙ୍କ ନେତୃତ୍ୱରେ ୩୦ ହଜାର ଲୋକ ଯାଜପୁର ଥାନା ଆକ୍ରମଣ କରି ସେଥିରେ ଜନତାର ଶାସନ ପ୍ରତିଷ୍ଠା କରିବାକୁ ଶାନ୍ତି ପୂର୍ଣ୍ଣ ଭାବରେ ସମବେତ ହୋଇଥିଲେ । ଏଥିରେ ଆତଙ୍କିତ ହୋଇ ଯାଜପୁର ସବ୍-ଡ଼ିଭିଜନାଲ ଅଫିସର ନିଜେ ଲୋକଙ୍କ ନିକଟକୁ ଆସିଥିଲେ । ଲୋକମାନେ ତାଙ୍କୁ ଚାକିରି ଛାଡ଼ି ସେମାନଙ୍କ ସଙ୍ଗେ ଯୋଗ ଦେବାକୁ ଅନୁରୋଧ କଲେ । ସେ ଏଥିପାଇଁ ୨ଦିନ ସମୟ ମାଗି ଲୋକମାନଙ୍କୁ ଫେରି ଯିବାକୁ ସମୟ ମାଗିଥିଲେ । ଏଠାରେ ପୋଷ୍ଟ ଅଫିସ ଓ ଜଲକର ଅଫିସର କାଗଜପତ୍ରମାନ

ନଷ୍ଟ କରି ଦିଆ ହୋଇଥିଲା । ତାପରେ ପୋଲିସ ଅତ୍ୟାଗ୍ଚର ଆରମ୍ଭ ହେଲା ଠେଠେବେଲକୁ ଶ୍ରୀ ପଦ୍ମନାଭ ରାୟ ଲୁଚି ରହି ପ୍ରତିରୋଧ ଆନ୍ଦୋଳନ ଚଳେଇ ଥାନ୍ତି । ତାଙ୍କ ସମସ୍ତ ବାଡ଼ି ସବୁ ପୋଲିସ ଇବତ କରି ନେଲେ ଓ ତାଙ୍କ ପରିବାରକୁ ପୋଲିସ ବହୁ ଦୁଃଖଯନ୍ତ୍ରଣା ଦେଇଥିଲେ । ଶ୍ରୀଯୁକ୍ତ ରାୟ ଦୁଇବର୍ଷ ଲୁଚି ରହିବା ପରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଅନୁସାରେ ଧରା ଦେଇଥିଲେ । ବଡ଼ଚଣା ଥାନାର ଅନ୍ୟତମ ବିଶିଷ୍ଟ କର୍ମୀ ଶ୍ରୀ କୃଷ୍ଣ ମୋହନ ରାଉତରାୟ ଦଳେ ଗ୍ରାମବାସୀଙ୍କ ସାହାଯ୍ୟରେ ଅନେକ ଜମିଦାରୀ କଚେରୀରୁ ଧାନ ଆଣି ଲୋକଙ୍କୁ ବାଣ୍ଟି ଦେଇଥିଲେ ଓ କଚେରୀ ପୋଷ୍ଟ ଅଫିସ, ଅବକାରୀ ଅଫିସ କାଗଜପତ୍ର ପୋଡ଼ି ଦିଆଯାଇଥିଲା । ଏଭଳି ଅଭିଯୋଗରେ ଶ୍ରୀଯୁକ୍ତ ରାଉତରାୟଙ୍କୁ ୨୨ ବର୍ଷ ଜେଲ ଆଦେଶ ହୋଇଥିଲା ।

## ବାଲେଶ୍ୱର ଜିଲ୍ଲା

ଭାରତର ସ୍ୱାଧୀନତା ଇତିହାସରେ ବାଲେଶ୍ୱରର ଇଞ୍ଚୁଡ଼ି, ପୋଖରୀ, ଗୁଡ଼ିବାଲି, ଇରମ ଓ ଧାମନଗରର ସୁଲଭାଣ୍ଡ ଓ ସେହି ସରଳ ନିରୀହ ଜନସାଧାରଣଙ୍କ ଅପୂର୍ବ ସାହସ ଓ ଆତ୍ମତ୍ୟାଗ ଚିରସ୍ମରଣୀୟ ହୋଇ ରହିବ । ବାଲେଶ୍ୱର ଓଡ଼ିଶାର ଏକ ଉପକୂଳବର୍ତ୍ତୀ ଜିଲ୍ଲା, ତେଣୁ ଜାପାନୀ ଆକ୍ରମଣ ଆଶଙ୍କାରେ ଆତଙ୍କିତ ହୋଇପଡ଼ି ବ୍ରିଟିଶ ସରକାର ଅଗଷ୍ଟ ଆନ୍ଦୋଳନର କେତେଦିନ ପୂର୍ବରୁ ଧାନ ଚାଉଳ ଇବତ କରି ନେଇ ଓ ସାଇକେଲ, ମଟର ଡଙ୍ଗା ପ୍ରଭୃତି ମଧ୍ୟ ଇବତ କରି ଲୋକଙ୍କ ଭିତରେ ବୃଥା ଆତଙ୍କ ସୃଷ୍ଟି କରିଥିଲେ ଓ ଗୋରା ପୋଲିସ ଅଫିସରମାନେ ଭୀତ ସନ୍ତ୍ରସ୍ତ

ହୋଇ ରହିଥିଲେ । ଲୋକେ ଯେତେବେଳେ ପ୍ରିୟତମ ନେତା-ମାନଙ୍କ ଶତ୍ରୁ ହାତରେ ବନ୍ଦୀ ହୋଇ ଯିବାର ସଂବାଦ ଶୁଣିଲେ ସେତେବେଳେ ଲୋକମାନେ ଅତ୍ୟନ୍ତ ଉତ୍ୟକ୍ତ ହୋଇ ପଚ୍ଛ ବ୍ରିଟିଶ ଶାସନ କଳକୁ ଅଚଳ କରି ପଞ୍ଚାଏତରାଜ ପ୍ରତିଷ୍ଠା କରିବା ପାଇଁ ମନସ୍ଥ କରିଥିଲେ । ଅଗଷ୍ଟ ଆନ୍ଦୋଳନରେ କର୍ମପନ୍ଥା ନିର୍ଦ୍ଧାରଣ କରିବାକୁ ଶ୍ରୀ ମୁରଲୀଧର ଜେନା ପ୍ରମୁଖ କେତେକ କଂଗ୍ରେସ କର୍ମୀ କୌଣସି ସ୍ଥାନରେ ସମବେତ ହୋଇ ସରକାରୀ କାଗଜପତ୍ର ପୋଡ଼ିଦେବା, ପୋଲିସ ଷ୍ଟେସନ ଓ ପୋଷ୍ଟ ଅଫିସ ଦଖଲ କରିବା ଓ ସରକାରୀ ଅଫିସରମାନଙ୍କୁ ଇସ୍ତଫା ଦେବାକୁ କହିବା ପାଇଁ ସ୍ଥିର କଲେ । ଏହି ସମ୍ବାଦ ପାଇ ସରକାର ସମସ୍ତ ଅତ୍ୟାଚାର ଓ ଜୁଲମ କରିବାକୁ ତିଆର ହୋଇ ରହିଗଲେ । ଭଣ୍ଡାରି ପୋଖରୀ ଥାନା ପୋଡ଼ିରେ ବାଲେଶ୍ୱରବାସୀଙ୍କ ବ୍ରିଟିଶ ଶାସନକୁ ଲୋପ କରିବାର ପ୍ରଥମ ପ୍ରୟାସ ପ୍ରକାଶ ପାଇଲା । ମାତ୍ର ସଙ୍ଗେ ସଙ୍ଗେ ଅମାନୁଷିକ ପୋଲିସ ଅତ୍ୟାଚାର ଆରମ୍ଭ ହୋଇଗଲା ଓ ଲୋକମାନେ ଭୟରେ ଭଣ୍ଡାରି ପୋଖରୀ ଛାଡ଼ି ପଳାଇ ଗଲେ । ଏଠାରୁ ୭ ହଜାର ଟଙ୍କା ସମୂହ ଜୋରିମାନା ଅଦାୟ ହୋଇଥିଲା ଓ ମୋଟରେ ୭୦ ଜଣ ଗିରଫ ହୋଇଥିଲେ ।

ସେପ୍‌ଟେମ୍ବର ୨୨ ତାରିଖରେ ଗୁଦବାଲି ପୋଲିସ ଷ୍ଟେସନରେ କୌଣସି ପ୍ରକାରେ ଖବର ପହଞ୍ଚିଲା ଯେ ଥାନା ପୋଷ୍ଟ ଅଫିସ ପୋଡ଼ିବାକୁ ଦଳେ କଂଗ୍ରେସକର୍ମୀ ଆସୁଛନ୍ତି । ଏଥିରେ ଆତଙ୍କିତ ହୋଇ ନିଜ ଜୀବନକୁ ବଞ୍ଚାଇବା ପାଇଁ ପୋଷ୍ଟ ଅଫିସର, ଥାନା ସବ୍ ଇନ୍‌ସ୍‌ପେକ୍‌ଟର ନିଜ ନିଜ କାମ ଛାଡ଼ି ଦେଇ ବୈତରଣୀ ନଦୀର ଆରପାଖକୁ ପାରି ହୋଇ

ସ୍କୁଲ ଯାଇଥିଲେ । ସେମାନେ ସେଠାରେ କିଛି ସମୟ ରହିଲା ପରେ ଜଣେ କର୍ମୀ ତାଙ୍କ ପାଖରେ ପହଞ୍ଚି ଦେଲେ ଯେ ସେମାନଙ୍କ ପ୍ରାଣନାଶର କୌଣସି ଆଶଙ୍କା ନାହିଁ । ତାଙ୍କର ପ୍ରତିଶ୍ରୁତିରେ ସେମାନେ ତାଙ୍କ ଅଫିସକୁ ଫେରି ଆସିଥିଲେ । ଗୋଟାଏ ମଜା କଥା ହେଲା ଯେ ଗିରଫ ହୋଇଥିବା ନେତାମାନଙ୍କ ପାଇଁ ଯେଉଁ ପ୍ରତିବାଦ ସଭା ହୋଇଥିଲା, ସେଠି ପୋଷ୍ଟ ଅଫିସର ଓ ସବ୍ ଇନ୍‌ସ୍‌ପେକ୍ଟର ନେତାମାନଙ୍କୁ ଖଲାସ କରିବା ପାଇଁ ଅଗତ କରାଯାଇଥିବା ପ୍ରସ୍ତାବକୁ ସମର୍ଥନ କରିଥିଲେ । ଯାହାହେଉ ଇରମ ଥାନାରେ ଯେଉଁଭଳି ଅନ୍ୟାୟ ଭାବରେ ଜନସାଧାରଣଙ୍କ ଉପରେ ଅତ୍ୟାଚାର ହୋଇଛି ତାର କୌଣସି ତୁଳନା ନାହିଁ । ଇମିତକ ଏ ସମ୍ପର୍କୀୟ ସରକାରୀ ତଦନ୍ତ ରିପୋର୍ଟ ମଧ୍ୟ ପଦାକୁ ପ୍ରକାଶ କରାଯାଇ ନାହିଁ । ସ୍କୁଲ ଚଳାଇବାର କୌଣସି କାରଣ ନ ଥିଲା । ଧାନ ଦାମ ଖୁବ୍ କମି ଯାଇଥିଲେ ମଧ୍ୟ କେତେକ କଂଗ୍ରେସକର୍ମୀ ଲୋକଙ୍କୁ ଧାନ ଦେଇ ଦେବା ପାଇଁ ସ୍ଥାନୀୟ ମହାଜନମାନଙ୍କୁ ଅନୁରୋଧ କରିଥିଲେ ମାତ୍ର ସେମାନେ ଶୁଣିଲେ ନାହିଁ । ତେଣୁ କ୍ଷୁଧାର୍ତ୍ତ ଜନତା ସେମାନଙ୍କ ଠାରୁ ଧାନ ଛଡ଼ାଇ ନେଇ ବାଣ୍ଟି ନେଇ ଯାଇଥିଲେ । ଇରମ ଜମିଦାର ଏଥିରେ ଭୟ ଭୀତ ହୋଇ ପୋଲିସଙ୍କ ସାହାଯ୍ୟ ଲୋଡ଼ିଲେ । ପ୍ରଧାନ ପ୍ରଧାନ କଂଗ୍ରେସ କର୍ମୀଙ୍କୁ ଗିରଫ କରିବାକୁ ପୋଲିସ ଦଳ ଆସି ଇରମ ଠାରେ ପହଞ୍ଚିଗଲେ । ଏ ସମ୍ବାଦ ପାଇ ଶହ ଶହ ଲୋକ ସମବେତ ହୋଇ ଏଠା ପଡ଼ିଆରେ ଏକ ସଭା କରିଥିଲେ । ଏହା ସମ୍ବନ୍ଧରେ କେତେକ ଠିକାଦାର ଓ ଜମିଦାରଙ୍କ କୋଠିରେ ରହିଥିବା ପୋଲିସ ଅଫିସରଙ୍କ ସାକ୍ଷୀ

ପଶ ନେଇ ଯାଉଥିଲେ । ଭେଡେଡ ଲୋକ ଚୌକିଦାରଙ୍କଠାରୁ ସେହି ଜିନିଷ ସବୁ ଛଡ଼େଇ ଅଣିଲେ । ଏଥିରେ ପୋଲିସ ସାହେବ ସିପେଇ ମାନଙ୍କୁ ଲୋକଙ୍କ ଉପରେ ଗୁଳି ଚଳେଇବାକୁ ଅଦେଶ ଦେଇଦେଲେ ଓ ସଙ୍ଗୀନ ମୁନରେ ମଧ୍ୟ ଲୋକଙ୍କ ଉପରେ ଅକ୍ରମଣ ଚଳେଇଲେ । ଏହି ଗୁଳିକାଣ୍ଡ ଓ ଅକ୍ରମଣ ଫଳରେ ୨୮ ଜଣ ସତ୍ୟାଗ୍ରହୀ ଜୀବନ ହରେଇଥିଲେ ପ୍ରାୟ ଦୁଇ ଶହ ଲୋକ ଅହତ ହୋଇଥିଲେ । ଏ ସମ୍ପର୍କରେ ୧୨୫ ଜଣ ଗିରଫ ହୋଇଥିଲେ ।

ଧାମନଗର ଥାନାରେ ଶ୍ରୀ ମୁରଲୀଧର ପଣ୍ଡାଙ୍କ ନେତୃତ୍ୱରେ ଲୋକମାନଙ୍କୁ ଧାନ ଗୃହ୍ନଳ ଅଣି ବାଣ୍ଟି ଦିଆ ହୋଇଥିଲା । ଭଣ୍ଡାରୀ ଓ ଲୁଣିଆ ପ୍ରଧାନ କର୍ମକେନ୍ଦ୍ର ଥିଲା । ପୋଲିସ ଶ୍ରୀଯୁକ୍ତ ପଣ୍ଡାଙ୍କୁ ଗିରଫ କରିବା ପାଇଁ ଭାଟ-ସାହିରେ ପହଞ୍ଚିଲେ । ସେତେବେଳେ ଲୋକେ ବହୁ ସଂଖ୍ୟାରେ ସମବେତ ହୋଇ ତାଙ୍କୁ ଗିରଫ ନ କରିବା ପାଇଁ ପୋଲିସ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିଥିଲେ । ପୋଲିସ ଦଳ ପ୍ରଥମେ ତାଙ୍କୁ ଗିରଫ କରିବାକୁ ସାହସ ନ କରି ଲୋକଙ୍କୁ ବିଭ୍ରାନ୍ତ କରି ଦେବା ପାଇଁ ଟିକିଏ ପଛକୁ ହଟି ଗଲେ ଓ ଲୋକେ ଯେମିତି ଅସଂଗଠିତ ହୋଇଗଲେ ସଙ୍ଗେ ସଙ୍ଗେ ଆସି ଲୋକଙ୍କ ଉପରେ ହଠାତ୍ ଗୁଳି ଚଳେଇ ଦେଇଥିଲେ । କାଳି ମାହାଲିଙ୍ଗ ନାମରେ ଜଣେ ଅଜ୍ଞାତ ସରଳ ଗ୍ରାମବାସୀର ଛାତିରେ ଏଠା ଗୁଳି ଅସି ବାଜିଲା । ଶ୍ରୀ ମାହାଲିଙ୍ଗ ଜୀବନର ଶେଷ ମୁହୂର୍ତ୍ତରେ କହିଥିଲା—"ଭାଇମାନେ, ମୋ ପାଇଁ ବ୍ୟସ୍ତ ହୁଅନା, ସ୍ୱାଧୀନ ଭାରତରେ ମୁଁ ପୁଣି ଜନ୍ମ ଗ୍ରହଣ କରିବି" । କାଳି ମାହାଲିଙ୍ଗ,

ଶନ୍ତ୍ରାଦାସ, ଶ୍ୟାମ ମଲିକ, କୃଷ୍ଣ ମାହାଲିକ, ଗୋପୀନାଥ କେନା ଶଙ୍କର ବେହେରା ଓ ଅଗଣି ସାହୁ ସେଇଠି ସଙ୍ଗେ ସଙ୍ଗେ ଜୀବନ ହରେଇଲେ ଓ ଅଉ ଦୁଇଜଣ ପରେ ମରିଗଲେ । ମୋଟରେ ୧୦ ଜଣ ଗୁଳି ଚୋଟରେ ମଲେ, ୪୦ ଜଣ ଆହତ ହେଲେ ଓ ୪୦ ଜଣ ଏ ସମ୍ପର୍କରେ ଗିରଫ ହୋଇଥିଲେ ।

ଖଇରା ଥାନାର ଖଇରାଡ଼ିହ, ଡୁବଗଡିଆ, ସୋର ଥାନାର ଚଡରା, ଜଳେଶ୍ୱର ଥାନାର ଲକ୍ଷ୍ମଣନାଥ ଷ୍ଟେଡ଼ ଧାନଚାଲ ଠାରେ ଜନତାଙ୍କ ଉପରେ ଗୁଳି ଚଳା ହୋଇଥିଲା ଓ ଏହା ଫଳରେ ୪ ଜଣ ପ୍ରାଣ ହରେଇଲେ ଓ ଅଉ ୪ ଜଣ ଆହତ ହୋଇଥିଲେ । ରଙ୍ଗ ବେହେରା, ମକର ଲେଙ୍କା, କେଳୁ ସାହୁ ଓ ସାବନ କେନା ଏଥିରେ ଜୀବନ ଦେଇଥିଲେ । ଏହି ଅଞ୍ଚଳରେ ପୋଲିସ ସ୍ତ୍ରୀ ମାନଙ୍କୁ ନାନା ଅଶ୍ଳୀଳ ଭାଷାରେ ଗାଲି ଦେଇ ସେମାନଙ୍କ ସ୍ୱାମୀ ଓ ନିକଟ ସମ୍ପର୍କୀୟଙ୍କୁ ଖଲାସ କରି ଦେବେ ବୋଲି କହି ଗହଣା ମାଗିଥିଲେ ଓ ନାନା ଧମକ ମଧ୍ୟ ଦେଖାଇଥିଲେ । ଭୋଗରାଇ ଥାନାରେ ପୋଲିସ ସାମ୍ପ୍ରଦାୟିକ ବିବାଦ ଲଗାଇ ଦେବାର ଉଦ୍ୟମ କରିଥିଲେ । ଅମୁସଲମାନଙ୍କୁ ଦମନ କରିବା ପାଇଁ ମୁସଲମାନଙ୍କୁ ଲଗେଇ ଦେବାକୁ ଚେଷ୍ଟା କରି ବିଫଳ ହୋଇଥିଲେ ।

# ଲକ୍ଷ୍ମଣ ନାୟକର ଜନ୍ମସ୍ଥାନ କୋରାପୁଟରେ

କୋରାପୁଟ ଅଂଶିକ ହସ୍ତମୂଦ ମାହାଲ ହୋଇପାରେ ବା ତଥାକଥିତ ଅନୁନ୍ନତ ଲୋକଙ୍କ ବାସସ୍ଥାନ ହୋଇପାରେ । ମାତ୍ର କୋରାପୁଟ ବିରାଟ ଓ ମହାନ, ତାହିଁକ ନା କୋରାପୁଟ ବୀର ଲକ୍ଷ୍ମଣ ନାୟକର ଜନ୍ମଭୂମି । ଲକ୍ଷ୍ମଣ ନାୟକର ତ୍ୟାଗର ତୁଳନା ନାହିଁ । କେବଳ କୋରାପୁଟର ନୁହେଁ, ଉତ୍କଳବାସୀଙ୍କର ସମସ୍ତ କଳଙ୍କ ସେ ତା ଲାଲ ରକ୍ତରେ ଧୋଇ ଦେଇଯାଇଛି । ଦେଶକୁ ସ୍ୱାଧୀନ କରିବାକୁ ଓଡ଼ିଆ ସେ ହସି ହସି ଫାସିକାଠରେ ଝୁଲି ପାରେ ତାର ପ୍ରମାଣ ଲକ୍ଷ୍ମଣ ନାୟକ ଦେଇ ଯାଇଛି । ଭାରତକୁ ସ୍ୱାଧୀନ କରିବା ପାଇଁ ସେ ଶତ୍ରୁକୁ ମାରି ଶିଖି ନ ଥିଲା । ନିଜେ ମରିବା ଶିଖି ଥିଲା । ସେଇଥିପାଇଁ ସେ ସବୁ ଅମର ହୋଇ ରହିଲା ।

କୋରାପୁଟବାସୀଙ୍କୁ ଅଗଷ୍ଟ ବିପ୍ଳବବେଳେ ନେତୃତ୍ୱ ଦେବା ପାଇଁ କୋରାପୁଟର ପ୍ରିୟତମ ନେତା ଶ୍ରୀଯୁକ୍ତ ରାଧାକୃଷ୍ଣ ବିଶ୍ୱାସରାୟ ବମ୍ବେରୁ ଫେରୁଥିବା ବେଳେ କୋରାପୁଟଠାରେ ଗିରଫ ହୋଇଗଲେ ଓ ତା ପୂର୍ବରୁ ଅନ୍ୟାନ୍ୟ ନେତାମାନେ ମଧ୍ୟ ଗିରଫ ହୋଇଥିଲେ । କଂଗ୍ରେସ ବେଆଇନ, ଜିଲ୍ଲା କଂଗ୍ରେସ କମିଟିର କାଗଜପତ୍ର, ମଠର, ଟାଇପରାଇଟର, ଟଙ୍କା ପଇସା ପୋଲିସ ସବୁ ଜବତ କରି ନେଇଥାନ୍ତି । ଏହା ଫଳରେ କୋରାପୁଟର ସରଳ ନିରୀହ ଜନସାଧାରଣ ଉତ୍ତ୍ୟକ୍ତ ହୋଇ ପଡ଼ିଲେ ମାତ୍ର ନେତୃତ୍ୱ ଦେବାକୁ କେହୁ ନ ଥିଲେ । ଏଭଳି ଅବସ୍ଥାରେ ଲୋକେ ନିଜେ ନିଜେ ସଂଗଠିତ ହୋଇ ଗାନ୍ଧିଜୀଙ୍କ "କର ବା ମର" ମନ୍ତ୍ରରୁ ପ୍ରେରଣା ପାଇ ବ୍ରିଟିଶ ଶାସନକୁ

କ୍ଷେପ କରି ଲୋକ ଶାସନକୁ ଚଳେଇବା ପାଇଁ ସ୍ଥିର କରି ଦେଲେ । ଏହାର ଶୁଭ ଦଥ ହେଲା କୋରାପୁଟର ଭାରତ ବିଖ୍ୟାତ ମାଥିଲିଗାଁରେ । ଅଗଷ୍ଟ ୨୮ ତାରିଖରେ ସ୍ଥାନୀୟ ବିଶିଷ୍ଟ କଂଗ୍ରେସ କର୍ମୀ ଶ୍ରୀ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ମାଥିଲି ହାଟରେ ୨ ହଜାର ଲୋକ ଜମା ହୋଇ ଏକ ସଭା କରିଥିଲେ । ସେହି ସଭାରେ ଶ୍ରୀ ଲକ୍ଷ୍ମଣ ନାୟକ ଲୋକମାନଙ୍କୁ ବର୍ତ୍ତମାନ ଚାଲିଥିବା ସରକାର ସଙ୍ଗେ ଅସହଯୋଗ କରି ପଞ୍ଚାଏତ ରାଜ ପ୍ରତିଷ୍ଠା କରିବା ପାଇଁ ବୁଝାଇ ଦେଇଥିଲେ । ପୋଲିସ ଦଳ ସଙ୍ଗେ ସଙ୍ଗେ ଲକ୍ଷ୍ମଣ ନାୟକଙ୍କୁ ଗିରଫ କରି ନେଲେ । ମାତ୍ର ଗିରଫ କରି ଥାନାକୁ ଆଣୁଥିବା ବେଳେ ଲୋକମାନେ ତାଙ୍କ ସଙ୍ଗେ ସଙ୍ଗେ ପୋଲିସ ଷ୍ଟେସନ ପର୍ଯ୍ୟନ୍ତ ଯାଇଥିଲେ । ପୋଲିସ ଥାନା ନିକଟରେ ଲୋକମାନଙ୍କୁ ଗୁଳିପିବା ପାଇଁ ଆଦେଶ ଦେଇ ସଙ୍ଗେ ସଙ୍ଗେ ଲୋକଙ୍କ ଉପରେ ଲାଠି ଗୁଳିଲା ଓ ଗୁଳି ମାଡ଼ ହେଲା । ଏହା ଫଳରେ ସେଇଠି ସଙ୍ଗେ ସଙ୍ଗେ ୭ ଜଣ ପ୍ରାଣ ହରେଇଲେ । ୧୦୦ ଜଣ ଆହତ ହୋଇଥିଲେ । ରାଜାଙ୍କ ପକ୍ଷର ଦଳେ ପୋଲିସ ମଧ୍ୟ ସରକାରଙ୍କ ଦମନ ଲୀଳାରେ ସାହାଯ୍ୟ କରିବାକୁ ସେଠାରେ ଥାଆନ୍ତି । ଜଣେ ଜଙ୍ଗଲ ଇନ୍‌ସ୍ପେକ୍ଟର ମଦ ପିଇ ଲୋକମାନଙ୍କ ସଙ୍ଗେ ଆସୁଥିବା ବେଳେ ଗୋଟାଏ ଖାଲରେ ପଡ଼ି ଯାଇ ପ୍ରାଣ ହରେଇଲେ । ଯେତେବେଳେ ସେଥିପାଇଁ କେହି ଗିରଫ ହେଲେ ନାହିଁ; ମାତ୍ର ୮।୧୦ ଦିନ ପରେ ଲକ୍ଷ୍ମଣ ନାୟକ ଓ ଅନ୍ୟାନ୍ୟ ୫୩ ଜଣଙ୍କ ନାମରେ ଏକ ଦୌରା ମକଦ୍ଦମା ଆରମ୍ଭ ହେଲା । ନିରୀହ ଜଙ୍ଗଲ ଇନ୍‌ସ୍ପେକ୍ଟରଙ୍କୁ ଲକ୍ଷ୍ମଣ ନାୟକ ସେ କାହିଁକି ହତ୍ୟା କରନ୍ତା ତାର କାରଣ କେହି ସନ୍ଧାନ କଲେ ନାହିଁ ।

ମାଟ ବର୍ଷର ହେଲ ଓ ଶ୍ରୀ ଲକ୍ଷ୍ମଣନାୟକଙ୍କୁ ଫାସି ଆଦେଶ ଓ ୪ଜଣଙ୍କୁ ଛାଡ଼ି ଦେଇ ଅନ୍ୟ ସମସ୍ତଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଆଦେଶ ହେଲ । ହାଇକୋର୍ଟରେ ଶ୍ରୀଯୁକ୍ତ ନାୟକଙ୍କ ପ୍ରାଣରକ୍ଷା ହୋଇ ପାରିଲ ନାହିଁ ଓ ସେ ବ୍ରହ୍ମପୁର ଜେଲର ୫୦୦ ରାଜନୈତିକ ବନ୍ଦୀଙ୍କ ଭିତରେ ଫାସି କାଠରେ ଝୁଲିଲେ । କି ଆନନ୍ଦରେ ସେ ଫାସି ବରଣ କରିଥିଲେ ତାଙ୍କୁ ଯେ ଦେଖିଛି ସେ କେବେ ଭୁଲି ପାରିବ ନାହିଁ ।

ପପଡ଼ାହାଣ୍ଡିଠାରେ ଦ୍ୱିତୀୟ ଗୁଳିକାଣ୍ଡର କୌଣସି ଯଥାର୍ଥତା ନ ଥିଲ । ଅଗଷ୍ଟ ବିପ୍ଳବର ପ୍ରଥମ ଭାଗରେ ପ୍ରାୟ ୬।୭ ହଜାର ଲୋକ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାକୁ ଡାକୁଗାଁ ଅଡ଼କୁ ଯାଉଥିଲେ । ଶ୍ରୀ ମାଧବ ପ୍ରଧାନ ପ୍ରମୁଖଙ୍କ ନେତୃତ୍ୱରେ ସେମାନେ ଯାଉଥାନ୍ତି । ନବରଙ୍ଗପୁର କେନ୍ଦ୍ର ପ୍ରାଦେଶିକ ରାସ୍ତାର ସଂକୀର୍ଣ୍ଣ ଗଳି ରାସ୍ତା ଭିତର ଦେଇ ଏହି ଜନତା ଶୋଭାଯାତ୍ରାରେ ଯାଉଥିବା ବେଳେ ପୋଲିସ ଦୁଇଦଳରେ ବିଭକ୍ତ ହୋଇ ସେମାନଙ୍କୁ ଆକ୍ରମଣ କରିଥିଲେ । ରାସ୍ତାର ଦୁଇପାଖ ବିଲ ଡେଡେବେଳକୁ ପାଣିରେ ପୂରି ରହିଥାଏ । ଶୋଭାଯାତ୍ରାକାରୀ ଅଗ୍ରସର ନ ହୋଇ ପାରି ରାସ୍ତା ଅଧରେ ଅଟକି ଗଲେ ଓ ସେମାନଙ୍କ ଉପରେ ଟ୍ରିଗର ଚାଲିଲ । ଅନେକଲୋକ ପହଁରି ଯିବେ ବୋଲି ଭାବି ନଈକୁ ଡେଇଁ ପଡ଼ିଲେ, ଏହି ଆକ୍ରମଣ ଫଳରେ ୧୯ଜଣ ପ୍ରାଣ ହରେଇ ଥିଲେ ଓ ୧୦୦ ଜଣ ଆହତ ହୋଇଥିଲେ ଓ ୧୪୦ଜଣଙ୍କୁ ଗିରଫ କରି ଯାଇଥିଲ । ଏ ସମ୍ପର୍କରେ ଶ୍ରୀ ଲକ୍ଷ୍ମୀଧର ଦାସ ଓ ଶ୍ରୀ ମାଧବ ପ୍ରଧାନ ପ୍ରମୁଖ ବିଶିଷ୍ଟ କଂଗ୍ରେସକର୍ମୀଙ୍କ ନାମରେ ନାନା ଅଭି-ଯୋଗରେ ମକଦ୍ଦମା କରାଯାଇ ସେମାନଙ୍କୁ ବହୁବର୍ଷ ଜେଲଦଣ୍ଡ ଆଦେଶ ହୋଇଥିଲ ।

ଏହାପରେ ସମଗ୍ର କୋରାପୁଟରେ ଯେଉଁ ଦମନ ଲୀଳା ଚାଲିଥିଲା ଓ ଅତ୍ୟାଚାର ସୃଷ୍ଟି କରାଯାଇଥିଲା ସଭ୍ୟ ଜଗତର ଇତିହାସରେ ତାର ତୁଳନା ହୋଇ ନ ପାରେ । ନାନାପୁର ଓ ପଡ଼ୁଆର କ୍ୟାମ୍ପରୁ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ନିଜେ ତମ୍ବୁ ପକାଇ କଂଗ୍ରେସ କର୍ମୀଙ୍କୁ ଗୋଟି ଗୋଟି କରି ଡାକି ତାଙ୍କ ଆଗରେ ତାଙ୍କୁ ଲଙ୍ଗଳା କରି ତାଙ୍କ ଖଦଡ଼ ଲୁଗାକୁ ପୋଡ଼ି ଦେଉଥିଲେ ଓ ସେହି କର୍ମୀଙ୍କୁ ସେଠାରେ ଥିବା ବହୁ ସଂଖ୍ୟକ କନେଷ୍ଟବଲ ନିର୍ମମ ପ୍ରହାର ଦେଉଥିଲେ । ଅନେକ କର୍ମୀ ସେହିଠାରେ ଚେତନା ହରାଇ ପଡ଼ି ଯାଇଥିଲେ । ତା ଛଡ଼ା ଏହି ନାନପୁର ଓ ପଡ଼ୁଆ ତଥା ବଇ ପରିଚୁଡ଼ା ଷ୍ଟେସନ, କୁନ୍ଦ୍ରଷ୍ଟେସନ ବୋରିଗୁମା ଓ ସିଂହପୁର ଷ୍ଟେସନ, ଜୟପୁର, ରାଣୀଗୋଡ଼ା, ସିମିଲି ଗୁଡ଼ା ପଟାଙ୍ଗି, ନବରଙ୍ଗପୁର ତାଲୁକ, କୋଡ଼ିଙ୍ଗା, ଓଡ଼ାଟପାଡ଼ା, ନବରଙ୍ଗପୁର ଓ ପପଡ଼ା ହାଣ୍ଡି, ତେନ୍ତୁଲି କୁଣ୍ଟି, ମିଲାଲପୁର ଗୁଣପୁରବର୍ତୀ ଗହଳମାନଙ୍କରେ ଗ୍ରାମ ପ୍ରଧାନ ଓ କନେଷ୍ଟବଲମାନେ ସଲସ୍ତର ହୋଇ ପଶି କଂଗ୍ରେସ ଲୋକମାନଙ୍କୁ ନାନା ଭୟ, ଧମକ ଚମକ ଦେଖାଇ ଓ ନାନା ଜୁଲୁମ କରି ଟଙ୍କା ପଇସା, ଗୋରୁ ଗାଈ, କୁକୁଡ଼ା, ଗହଣା, ଧାନ ଚାଉଳ, ଲୁଗାପଟା ଯାହା ପାଇଲେ ସବୁ ଜବରଦସ୍ତି ନେଇ ଆସିଥିଲେ । ଲୋକେ ଏଥିରେ ଟିକିଏ ବାଧା ଦେଲେ ସେମାନଙ୍କୁ ନାନା ଅଶ୍ଳୀଳ ଭାଷାରେ ଗାଳି ଦେଇ ମାଡ଼ ମାରୁଥିଲେ । ସ୍ତ୍ରୀମାନଙ୍କୁ ଲଙ୍ଗଳା କରି ସେମାନଙ୍କ ଲୁଗା ନେଇ ଯାଇଥିଲେ ଓ ଖଦଡ଼ ଲୁଗା ଦେଖିଲେ ମାନେ ଅତ୍ୟାଚାର ଚଳାଇ ଥିଲେ । ଜୟପୁର ରାଜାଙ୍କ କର୍ମଚାରୀ ଇଂରେଜ ସରକାରଙ୍କ ପୋଲିସ ସଙ୍ଗେ ମିଶି ସମସ୍ତ କୋରାପୁଟରେ ଯେଉଁ ଅତ୍ୟାଚାର କରିଥିଲେ କୋରାପୁଟବାସୀ ତାହା କେବେ

ଭୁଲି ପାରିବେ ନାହିଁ । ଏହା ସାଙ୍ଗକୁ କୋରାପୁଟ ଜେଲରେ ଜେଲ କର୍ତ୍ତୃପକ୍ଷଙ୍କ ମାତ୍ରାଧିକ ଦୁର୍ବ୍ୟବହାର ଓ ନିର୍ମମ ଅବହେଳା ଫଳରେ ୫୦ଜଣ ରାଜନୈତିକ ବନ୍ଦୀ ପୋକ ମାଛି ପରି ଜୀବନ ହରାଇଥିଲେ । ଅଗଷ୍ଟ ସଂଗ୍ରାମରେ ସମଗ୍ର କୋରାପୁଟରେ ୧୯୨୦ ଜଣ ଗିରଫ ହୋଇଥିଲେ ୧୧ଜଣ ଅଟକବନ୍ଦୀ ହୋଇଥିଲେ ଓ ୫୨୦ ଜଣ ରାଜନୈତିକ ଦଣ୍ଡ ଭୋଗିଥିଲେ । ୨୪ଟି ସ୍ଥାନରେ ଲାଠି ମାଡ଼ ହୋଇଥିଲା ଓ ୪୧ଥର ଗୁଳି ଚଳା ହୋଇଥିଲା ଏବଂ ଏହା ଫଳରେ ୨୧୪୭ ଆହତ ହୋଇଥିଲେ ଓ ୧୧୨୦୦ ଟଙ୍କା ସମୂହ ଜୋରିମାନା ଜାରିକରା ଯାଇଥିଲା ।

● ଲକ୍ଷ୍ମୀପୁର, ମାଥିଲି ଓ ଦଶମନ୍ତପୁର ପୋଲିସ ଷ୍ଟେସନ ଉପରେ ଆକ୍ରମଣ ହୋଇଥିଲା ଓ ସମଗ୍ର ଜିଲାରେ ଧାରକଟା, ରଜର୍ ଜଙ୍ଗଲରେ ଗଛ କାଟିବା, ରେଳଲାଇନ ଧ୍ୱଂସ କରିଦେବା, ପୋଲ ଉପରେ ଆକ୍ରମଣ ଓ ଟାକ୍ସ ବନ୍ଦ ଆନ୍ଦୋଳନ ବହୁଦିନ ପର୍ଯ୍ୟନ୍ତ ଚାଲିଥିଲା । ମୋଟରେ ୯ହଜାର ଟଙ୍କାର ସମ୍ପତ୍ତି ବାଜ୍ୟାପ୍ତ ହୋଇଛି । ପୋଲିସ ଗୃହଟାଘର ପୋଡ଼ି ଦେଇଥିଲେ, ୧୨ଜଣ ସ୍ତ୍ରୀ ଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କରିଥିଲେ ଓ ୩ ଜଣ ଲୋକଙ୍କ ଗୋଡ଼କୁ ଗଛରେ ଟାଙ୍ଗିଦେଇ ପ୍ରହାର କରିଥିଲେ ।

ନିମାପଡ଼ା ଗୁଳିକାଣ୍ଡ—ଅକ୍ଟୋବର ୧୨ ତାରିଖରେ ପୁରୀଜିଲାର ନିମାପଡ଼ା ଥାନା ନିକଟରେ ୫ହଜାର ଲୋକଙ୍କର ଏକ ବିରାଟ ସଭାରେ ଅଗଷ୍ଟ ବିପ୍ଳବର କର୍ମସୂଚୀ ସ୍ଥିରହେଲା । ସଭା ଶେଷରେ ଉପସ୍ଥିତ ଜନତା ନିମାପଡ଼ାଥାନା ଦଖଲ କରିବା ପାଇଁ ଏକ ଶୋଭାଯାତ୍ରାରେ ବାହାରିଲେ । ଥାନା ନିକଟରେ ଶୋଭାଯାତ୍ରାକାରୀ ପହଞ୍ଚିଲା ବେଳେ ପୋଲିସ ଗୁଳି ଚଳେଇଲେ । ଏହା ଗୁଳି ମାଡ଼ରେ ଜଣେ ଜୀବନ ହରାଇ ଥିଲା ଓ ୧୦ ଜଣ ଆହତ ହୋଇଥିଲେ ।

# "ଅନ୍ଧାରି ମୂଲକ" ଢେଙ୍କାନାଳରେ--

ଢେଙ୍କାନାଳ ଅନ୍ଧାର ମୂଲକ ନୁହେଁ—ବାଜିରାଉତ ଓ ତା ସାଥୀମାନେ ବନ୍ଧୁକ ଗୁଳି ଆଗରେ, ଲାଠି ଆଗରେ ଓ ସଙ୍ଗୀନ ମୁନରେ ପଶ୍ଚଷାଦେଇ ନିଜର ଶେଷ ରକ୍ତବିନ୍ଦୁକୁ ଢାଳି-ଦେଇ ତାର ପ୍ରମାଣ ଦେଇ ଯାଇଛନ୍ତି । ୧୯୩୮ରେ ଢେଙ୍କାନାଳର ବିଦ୍ରୋହୀ ଜନତା ଦେଖାଇ ଦେଇଥିଲେ ଯେ ଅତ୍ୟାଚାରୀ ଶାସକର ଗୁର୍ଖା ସିପାହୀକୁ ଭୟ କରି ସେମାନେ ଅନ୍ୟାୟ ଓ ଅତ୍ୟାଚାରକୁ ସହିବେ ନାହିଁ । ଯେ କୌଣସି ନିର୍ମମ ଦମନ ମଧ୍ୟ ସେମାନଙ୍କୁ ଦବେଇ ଦେଇ ପାରିବ ବୋଲି ତାହା ସେମାନେ ନିଜ କାର୍ଯ୍ୟରେ ଦେଖାଇ ଦେଇଥିଲେ । ମାତ୍ର ୧୯୪୨ରେ ଢେଙ୍କାନାଳର ବିଦ୍ରୋହୀ ଜନତା ପ୍ରମାଣ କରି ଦେଲେ ଯେ ସେମାନେ କେବଳ ଯେ ଅତ୍ୟାଚାର ଅନ୍ୟାୟ ଓ ଜୁଲୁମ ବିରୁଦ୍ଧରେ ଠିଆ ହୋଇ ପାରନ୍ତି ସେତିକି ନୁହେଁ ସେମାନେ ଅତ୍ୟାଚାରୀ ଶାସନକୁ ଲୋପକରି ସେଠାରେ ଜନତାର ଶାସନ ପ୍ରତିଷ୍ଠା କରି ଦେଇ ପାରନ୍ତି । ଗୁଳି ଆଗରେ କେବଳ ଛାତି ଦେଖାଇଦେଇ ପାରନ୍ତି ତା ନୁହେଁ ଅତ୍ୟାଚାରୀର ଛାତିକୁ ଗୁଳି ଚଳେଇ ପାରନ୍ତି ଓ ସେହିମାନଙ୍କଠୁ ବନ୍ଧୁକରେ ସେମାନଙ୍କ ସଙ୍ଗେ ଯୁଦ୍ଧ କରିପାରନ୍ତି ।

ବମ୍ନବା ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ଢେଙ୍କାନାଳର ୧୯ ଜଣ ପ୍ରଜାମଣ୍ଡଳକର୍ମୀ ଅଗଷ୍ଟ ୨୭ ତାରିଖ ଦିନ ଯେତେବେଳେ ମଡ଼ି ଥାନା ଆକ୍ରମଣ କରନ୍ତି ସେତେବେଳକୁ ସକାଳ ହୋଇ ନ ଥିଲା । ରାତି ୩ଟା ବେଳୁ ମଡ଼ି ଥାନା ନିକଟ ଜଙ୍ଗଲରେ ଲୁଚିରହି ଥାନା ଆକ୍ରମଣ ପାଇଁ ସେମାନେ ସଜବାଜ

ହୋଇଥିଲେ । ସେମାନଙ୍କ ହାତରେ ଥିଲା ୧୪ଟି ବାରୁଦଭରା ବନ୍ଧୁକ, ଶହେ ପର୍ଯ୍ୟନ୍ତ ଠାଙ୍ଗିଆ, ସାବଳ । ଥାନାର ଦୁଇଜଣ କନ୍‌ଷ୍ଟେବଲ ସଙ୍ଗେ ସଙ୍ଗେ ଅସ୍ତ୍ର ସମର୍ପଣ କରିଦେଲେ ଓ ଥାନାର ଅଉ ୭ଜଣ କର୍ମଚାରୀଙ୍କୁ ଗିରଫ କରି ଥାନା ହାଜତରେ ବନ୍ଦୀ କରାଗଲା । ଥାନା ଭିତରୁ ସେମାନେ ପାଇଲେ ୧୭ଟି ରାଇଫେଲ୍ ଓ ୫୦୦ ପର୍ଯ୍ୟନ୍ତ ଗୁଳି । ଥାନାଟି ବିଦ୍ରୋହୀମାନଙ୍କର ପୂର୍ଣ୍ଣଭାବରେ ଦଖଲରେ ଆସିଲା । ଥାନା ନିକଟରେ ରହିଥିବା ପୋଲିସ ଅଫିସରମାନଙ୍କୁ ବିଦ୍ରୋହୀମାନେ ସତର୍କବାଣୀ ଶୁଣାଇ ଦେଲେ ସେମାନେ କୌଣସିମତେ ବାଧା ଦିଅନ୍ତୁ ନାହିଁ ମାତ୍ର ବ୍ୟକ୍ତିଗତ ଭାବରେ ସେମାନଙ୍କ ବିରୁଦ୍ଧରେ ତାଙ୍କର କିଛି ଅଭିଯୋଗ ନାହିଁ । ଥାନା ଅଫିସରମାନେ ନିର୍ଭୟରେ ସେମାନଙ୍କର ସମସ୍ତ ଜିନିଷ ପତ୍ର ଦେଇଗଲେ । ଥାନାର ସମସ୍ତ କାଗଜ ପତ୍ର ପୋଡ଼ି ଜାଳି ବିଦ୍ରୋହୀମାନେ ଆଗକୁ ଚାଲିଲେ । ଆଗରେ ରଜାର ଧାନଗୋଲା ପଡ଼ିଲା । ସେହି ଗୋଲା ଭିତରେ ପଶି ସେମାନେ ଧାନ ନେଇ ଆସି ଲୋକମାନଙ୍କୁ ବାଣ୍ଟିଦେଲେ । ଷ୍ଟେଟ୍ ତହସିଲଦାରଙ୍କ କାଗଜପତ୍ର ଓ ଘର ପୋଡ଼ାହେଲା; ତାପରେ ପଡ଼ିଲା ମତି ସବ୍‌ଡିଭିଜନାଲ ଅଫିସରଙ୍କ କୋର୍ଟ । ସେଠି ଥାଆନ୍ତି ୫୦ଜଣ ମ୍ୟାଜିଷ୍ଟ୍ରେଟ୍ । ସେମାନଙ୍କର ସମସ୍ତ କାଗଜପତ୍ର ପୋଡିଦିଆ ହେଲା ମାତ୍ର ମାଜିଷ୍ଟ୍ରେଟ୍ ଓ ଏସ୍ ଡ଼ି ଓ ସେମାନଙ୍କ ପରିବାରଙ୍କୁ ଓ ଜିନିଷପତ୍ରକୁ ନିର୍ବିଘ୍ନରେ ନେଇ ଯିବାକୁ ସୁବିଧା ପାଇଲେ । ଅବକାରୀ ଦୋକାନ, ହାଟଖେଦା ଓ ଅନ୍ୟାନ୍ୟ ସମସ୍ତ ସରକାରୀ ଅଫିସ ଧୁହୁଁ ଧୁହୁଁ ଜଳି ଉଠିଲା । ସେମାନେ ପହଞ୍ଚିଲେ ମତି ଜେଲରେ; ଜେଲ କର୍ମଚାରୀମାନେ ସେମାନଙ୍କ ନିକଟରେ ଅସ୍ତ୍ର ସମର୍ପଣ କଲେ ଏବଂ ସେ ଜେଲ ହେଲା ସ୍ୱାଧୀନ

ଢେଙ୍କାନାଳର ଜେଲ । ସେତେବେଳକୁ ହେଲାଣି ଦିନ ୨ଟା । ଢେଙ୍କାନାଳ ରାଜ୍ୟର ଗ୍ରାମେ ଗ୍ରାମେ ଏ ସଂମ୍ବାଦ ପହଂଚି ଗଲାଣି । ସେମାନଙ୍କ ନେତାମାନଙ୍କଠାରୁ ନିର୍ଦ୍ଦେଶ ପାଇବାକୁ ହଜାର ହଜାର ଲୋକ ମଡ଼ି ସହରରେ ଜମା ହେଲେଣି । ଦିନ ୨ଟା— ମଡ଼ି ସହରରେ ୧୦ ହଜାର ଲୋକଙ୍କର ବିରାଟ ଜନସଭାରେ ବିପ୍ଳବୀ ବୈଷ୍ଣବ ପ୍ରମୁଖ ନେତୃବର୍ଗ ବୁଝାଇଦେଲେ ଯେ ଆମେ ଆଉ ପରାଧୀନ ନୋହୁ, ଆମେ ସ୍ୱାଧୀନ ଢେଙ୍କାନାଳର ବାସିନ୍ଦା, ଲୋକମାନେ ଗାଁ'ରୁ ଗାଁ'କୁ ପଞ୍ଚାଏତ ଗଢ଼ି ନିଜ ଶାସନର ବ୍ୟବସ୍ଥା ନିଜେ କରନ୍ତୁ । ସଙ୍ଗେ ସଙ୍ଗେ ସେଠାରେ ଉପସ୍ଥିତ ଥିବା ଗ୍ରାମବାସୀଙ୍କ ଭିତରେ ପଞ୍ଚାଏତ ଗଢ଼ି ଦିଅ ହେଲା ଓ ବିଭିନ୍ନ ବିଭାଗର କର୍ମକର୍ତ୍ତା ଠିକ୍ କରି ଦିଅ ହେଲା । ଲୋକମାନେ ସେଥିରୁ ପ୍ରେରଣା ନେଇ କାମ ଆରମ୍ଭ କରିଦେଲେ ।

ବିପ୍ଳବୀ ଜନତା ସ୍ଥିର କଲେ ଢେଙ୍କାନାଳ ରାଜାଙ୍କ ପାଖକୁ ଜଣେ ଦୂତପଠାଇବେ । ସେହି ଦୂତ ରାଜାଙ୍କୁ ଜଣାଇ ଦେବେ ଯେ ସେ ସ୍ୱାଧିନ ଢେଙ୍କାନାଳର ଦୂତରୂପେ ଆସିଛନ୍ତି ଓ ରାଜା ସେମାନଙ୍କ ସଙ୍ଗେ ସନ୍ଧିକରନ୍ତୁ ଓ ବ୍ରିଟିଶସରକାର ଠାରୁ ସମସ୍ତ ସମ୍ପର୍କ ତୁଟାଇ ଦିଅନ୍ତୁ । ତାହେଲେ ସେମାନେ ତାଙ୍କୁ ନେତୃତ୍ୱ ଦେବେ । ଏହାପରେ ଅଗଷ୍ଟ ୨୬ ତାରିଖଠାରୁ ସେପଟେମ୍ବର ୪ ତାରିଖ ପର୍ଯ୍ୟନ୍ତ ମଡି ସବ୍‌ଡିଭିଜନର ଗାଁ ଗାଁ ଭିତର ଦେଇ ଚାଲିଲା ବିପ୍ଳବୀ ଜନତାର ପଟୁଆର । ପଟୁଆରରେ ଥାଆନ୍ତି ୮ ହଜାର ଲୋକ । ସେମାନଙ୍କ ହାତରେ ଥାଏ ୩୦ଟା ବନ୍ଧୁକ ୧୫ ଟା ରାଇଫଲ, ବହୁ ଖଣ୍ଡା, ତରବାରି, ସାବଳ । ପାଇକମାନେ ନାନା ବାଦ୍ୟ ବଜାଇ ବଜାଇ ଆଗେ ଆଗେ ଚାଲିଥାନ୍ତି ।

ସେତେବେଳକୁ ଭୁବନ ଗୁନ୍ଦପୁର ଦୁଇଟା ଯାକ ଥାନା ପୋଡ଼ା ଧୂଆଁ ହେଲଣି । ପଟୁଆରରେ ଯାଇ ସେମାନେ ସ୍ୱାଧୀନ ଭାରତ ବାଣୀ ଶୁଣାଉଥାନ୍ତି ଓ ପଞ୍ଚାଏତ ଶାସନ ପ୍ରତିଷ୍ଠାପାଇଁ ନିର୍ଦ୍ଦେଶ ଦେଉଥାନ୍ତି । ଶେଷରେ ସେମାନେ ପହଞ୍ଚିଲେ ପରଜଙ୍ଗ ଥାନାର ଦେଢ଼ମାଇଲ୍ ଦୂରରେ ଜଙ୍ଘାପଡ଼ାଠାରେ । ସେଦିନ ସେପ୍ଟେମ୍ବର ୪ ତାରିଖ । ଦିନ ୨ଟା ବେଳେ ପରଜଙ୍ଗ ଥାନାରୁ ୪୦ ଜଣ ସଶସ୍ତ୍ର ପୋଲିସ ବିପ୍ଳବୀ ଜନତାଙ୍କୁ ଆକ୍ରମଣ କରିବାକୁ ଆସିଲେ । ୫ ହଜାର ବିପ୍ଳବୀ ଢେଙ୍କାନାଳବାସୀ ଓ ସଶସ୍ତ୍ର ପୋଲିସ ବାହିନୀଙ୍କ ଭିତରେ ଦିନ ୨ଟାଠାରୁ ୪ଟା ପର୍ଯ୍ୟନ୍ତ ଚାଲିଲା ଭୀଷଣ ଯୁଦ୍ଧ । ଦୁଇ ଦଳ ଭିତରେ ଯଥେଷ୍ଟ ବ୍ୟବଧାନ ଥାଏ । ବିପ୍ଳବୀ ବୈଷ୍ଣବ ଜନତା ଆଗରେ ଆସି ଛିଡ଼ା ହୋଇ ସାହସ ଦେଉଥାନ୍ତି । ଦୁଇ ଘଣ୍ଟା ଯୁଦ୍ଧ ଭିତରେ ଉଭୟ ପକ୍ଷରୁ ଅବିରତ ବନ୍ଧୁକ ଓ ରାଇଫଲ୍ ଚଳା ହେଉଥାଏ । ଶେଷରେ ଶତ୍ରୁ ପକ୍ଷର ଗୋଟାଏ ଗୁଳି ଆସି ବୈଷ୍ଣବଙ୍କ ହାତରେ ବସିଲା ଓ ହାତ କଟି ଗଲା । ସଙ୍ଗେ ସଙ୍ଗେ ତାଙ୍କ ସାଥୀମାନେ ତାଙ୍କୁ ସେଠାରୁ ଘେନି ଆସିଲେ ଓ ସେହି ଦିନଠାରୁ ବୈଷ୍ଣବ ହେଲେ ଫେରାର । ସେ ଦିନର ଯୁଦ୍ଧ ଅହୁରି ମଧ୍ୟ ଘଣ୍ଟାଏ ହୋଇ ବନ୍ଦ ରହିଲା । ଏ ଘଟଣା ପରେ ମାସେ ପର୍ଯ୍ୟନ୍ତ ଢେଙ୍କାନାଳ ପୋଲିସ ଗାଁ ଭିତରକୁ ଯିବାକୁ ସାହସ କରି ନ ଥିଲେ । ମାସକ ପରେ ରଙ୍ଗ ମାଟିଆ ପାହାଡ଼ ଉପରେ ବିପ୍ଳବୀ ଜନତା ଓ ପାହାଡ଼ ତଳେ ରଜାର ସଶସ୍ତ୍ର ପୋଲିସ ବାହିନୀଙ୍କ ଭିତରେ ଭୀଷଣ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ହେଲା ରାତିରେ । ଏହି ଯୁଦ୍ଧ ଠିକ୍ ଚଟ୍ଟଗ୍ରାମର ଜାଲାଲ୍ବାଦ ଯୁଦ୍ଧର ଅମର କାହାଣୀ ସ୍ମରଣ କରାଇଦିଏ । ବୀର ଢେଙ୍କାନାଳ-ବାସୀ ଆମକୁ ସେ ଗୌରବ ଦେଇଛନ୍ତି ।

ଏହା ପରେ ଢେଙ୍କାନାଳବାସୀଙ୍କ ଉପରେ ନିର୍ମମ ଦମନ ଓ ଅତ୍ୟାଚାରର କାହାଣୀ ଅତି ନିର୍ମମ ଓ କରୁଣ । ଢେଙ୍କାନାଳର ବିଦ୍ରୋହୀ ଜନତା ରଂପଟିଥିବ ଯେଉଁ ସବୁ ଗାଁ ବାଟେ ଯାଇ ଥିଲେ ସେହି ସବୁ ଗାଁର ପ୍ରତ୍ୟେକ ଲୋକଠାରୁ ସମୂହ ଜୋରିମାନା ଜବରଦସ୍ତି ଆଦାୟ କରାଗଲା । ସେହି ସବୁ ଗାଁର ସ୍ତ୍ରୀ ଲୋକଙ୍କ ଉପରେ ପାଶବିକ ଅତ୍ୟାଚାର ହେଲା । ସେମାନଙ୍କ ନାକରୁ ଗହଣା ଟାଣି ନେବା, ଘରୁ ଜିନିଷପତ୍ର ଜବରଦସ୍ତି ନେଇଯିବା ଏକ ଦୈନନ୍ଦିନ ଘଟଣା ହୋଇଗଲା । ବିପ୍ଳବୀ ବୈଷ୍ଣବଙ୍କ ଘରଦ୍ୱାର ସବୁ ପୋଡ଼ିଦିଆହେଲା ଓ ଜିନିଷପତ୍ର ଜବତ କରି ନିଆ ହେଲା । ବୈଷ୍ଣବଙ୍କର ମୃତଶବ ଦେଖାଇ ଦେଲେ ୫ହଜାର ଟଙ୍କା ଦିଆଯିବ ବୋଲି ଘୋଷଣା କରାଗଲା । ମୋଟରେ ଢେଙ୍କାନାଳରୁ ୩୦୦ ଜଣଙ୍କୁ ଗିରଫ କରାଯାଇଥିଲା । ସେଥିରୁ ଅନେକଙ୍କୁ ଛାଡ଼ି ଦେଇ ୧୫୦ଜଣଙ୍କୁ ଜେଲଦଣ୍ଡ ଦିଆ ହୋଇଥିଲା । ୮୦ ହଜାର ଟଙ୍କା ସମୂହ ଜୋରିମାନା ଆଦାୟ ହୋଇଛି ବୋଲି ସରକାରୀ ହିସାବରୁ ମିଳୁଛି ମାତ୍ର ପ୍ରକୃତରେ ପ୍ରାୟ ୫ଲକ୍ଷ ଟଙ୍କା ଲୋକଙ୍କଠାରୁ ଜୋରିମାନା ଆଦାୟ ହୋଇଛି ।

ଢେଙ୍କାନାଳବାସୀଙ୍କର ଅଗଷ୍ଟ ବିପ୍ଳବରେ ବିରାଟ ଅଗ୍ନି-ପରୀକ୍ଷାକୁ ଜଙ୍ଗଲବାସୀଙ୍କୁ ଅତୁଳନୀୟ ଗୌରବ ଦେଇଛି ମାତ୍ର ଢେଙ୍କାନାଳ ବିପ୍ଳବର ଶ୍ରେଷ୍ଠବୀର ବୈଷ୍ଣବ ଯେଉଁମାନେ ଅଗଷ୍ଟ ବିପ୍ଳବ ବେଳେ ବିପ୍ଳବର ବିରୋଧ କରିଥିଲେ ଶେଷରେ ସେମାନଙ୍କର ଦଳରେ ମିଶିବାରୁ ତାଙ୍କ ବନ୍ଧୁମାନେ ଘୋର ଦୁଃଖିତ ଓ ମର୍ମାହତ ।

# ପବିତ୍ର ପ୍ରଧାନଙ୍କ ତାଳଚେରରେ

ଅଗଷ୍ଟ ବିପ୍ଳବରେ "ଅଜ୍ଞାତ ମୁଲ୍କ" ତାଳଚେରର ଦାନ ଅତୁଳନୀୟ । ଢେଙ୍କାନାଳବାସୀଙ୍କ ସଙ୍ଗେ ତାଳଚେରବାସୀ ତାଳ ପକାଇ ଚାଲିଗଲେ । ଅଗଷ୍ଟ ୨୨ ତାରିଖରେ ତାଳଚେରବାସୀ ଶୁଣି ଆନନ୍ଦରେ ମାତି ଉଠିଲେ ଯେ ସେମାନଙ୍କ ପ୍ରିୟତମ ନେତା ପବିତ୍ର ପ୍ରଧାନ ଜେଲରୁ ଖସି ଆସିଛନ୍ତି । ତାଙ୍କର ନେତୃତ୍ୱରେ ସେମାନେ ତାଳଚେର ଶାସନକୁ ଅଧିକାର କରିବେ ବୋଲି ଚାହିଁ ରହିଲେ । ଏହି ସମୟରେ ଗୋଟାଏ ସମ୍ବାଦ ପ୍ରଚାର ହୋଇଗଲା ଯେ ପବିତ୍ର ବାବୁଙ୍କୁ ଗୁଳି କରି ହତ୍ୟା କରି ଦିଆ ହୋଇ ସେ ଜେଲରୁ ଖସି ପଳାଇଲେ ବୋଲି ମିଥ୍ୟା ସମ୍ବାଦ ରଚନା କରି ଦିଆହୋଇଛି । ତାଳଚେରର ବିକ୍ଷୁବ୍ଧ ଜନତା ଏଥିରେ ଅତ୍ୟନ୍ତ ଉତ୍ୟକ୍ତ ହୋଇ ଉଠିଲେ । ହଜାର ଲୋକ ଦୁଇଦିନକାଳ ସମଗ୍ର ତାଳଚେର ସହରକୁ ଘେରାଉ କରି ସେମାନଙ୍କ ପ୍ରିୟତମ ନେତା ବିପ୍ଳବୀ ପବିତ୍ର ପ୍ରଧାନଙ୍କୁ ଆଣିଦେବା ପାଇଁ ଷ୍ଟେଟ କର୍ତ୍ତୃପକ୍ଷଙ୍କଠାରେ ଦାବୀ କଲେ । ଜନତାଙ୍କୁ ଘଉଡ଼ାଇବାର ସମସ୍ତ ଚେଷ୍ଟା ବିଫଳ ହେଲା । ପବିତ୍ର ପ୍ରଧାନଙ୍କ ସମ୍ବାଦ ନ ପାଇଲେ ସେମାନେ ଫେରି ଯିବେ ନାହିଁ । ଶେଷରେ ଉପରୁ ଉଡ଼ାଜାହାଜରୁ ସେମାନଙ୍କ ଉପରେ ଗୁଳି କରାଗଲା ଓ ସେମାନଙ୍କୁ ଘଉଡ଼ାଇଦିଆ ହେଲା । ମାତ୍ର ବିପ୍ଳବୀ ପବିତ୍ରଙ୍କୁ ସେମାନେ ଭୁଲି ପାରିଲେ ନାହିଁ । ତାଙ୍କର ସ୍ମରଣରେ ସେମାନେ ସମଗ୍ର ତାଳଚେରରେ ଆନ୍ଦୋଳନ ଚଳେଇଲେ । ବିପ୍ଳବୀ ଜନତା ବହୁ ଥାନା, ପୋଷ୍ଟ ଅଫିସ ପୋଡି ଦେଇଥିଲେ ଓ ତାଳଚେର ଷ୍ଟେସନରୁ ମାଇଲ ମାଇଲ ଧରି ରେଲଲାଇନ ଉଠାଇ ଦେଇ-

ଥିଲେ । ଏ ସମ୍ପର୍କରେ ଅନେକ ଲୋକଙ୍କୁ ଗିରଫ କରା ଯାଇଥିଲା ଓ ଅନେକ ମଧ୍ୟ ସେମାନେ ଜେଲ୍ ଦଣ୍ଡ ଭୋଗିଛନ୍ତି ।

ଓଡ଼ିଶାରେ ଅଗଷ୍ଟ ବିପ୍ଳବର ଏହି ଅବସ୍ଥାରେ ଫେରାର ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ଅକ୍ଟୋବର ୧୧ ତାରିଖ ଦିନ କଟକ ସହରରୁ ଗିରଫ ହେଲେ ଓ ତାଙ୍କ ସଙ୍ଗେ ଓଡ଼ିଶାର ବାଲେଶ୍ୱର ଜିଲ୍ଲାରୁ ପ୍ରାୟ ୩୦ ଜଣ ପର୍ଯ୍ୟନ୍ତ ଗିରଫ ହେଲେ । ବିଚାର ଭିତରେ ସେମାନଙ୍କ ଭିତରୁ କେତେକଙ୍କୁ ଛାଡ଼ି ଦିଆ ହେଲା ମାତ୍ର ଶ୍ରୀଯୁକ୍ତ ଦ୍ୱିବେଦୀ ପ୍ରମୁଖ ବାଲେଶ୍ୱର ଜିଲ୍ଲାର ୧୨ ଜଣଙ୍କ ନାଁରେ ବାଲେଶ୍ୱର ଅଭିଯୋଗରେ ଜଣେ ସ୍ୱତନ୍ତ୍ର ଜଜ୍‌ଙ୍କ ନିକଟରେ ବିଚାର ଚାଲିଲା । ଶ୍ରୀଯୁକ୍ତ ଦ୍ୱିବେଦୀଙ୍କୁ ପ୍ରଥମେ ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ କରା ଯାଇଥିଲା କିନ୍ତୁ ପରେ ତା ଉଠାଇ ନିଆ ହେଲା । ବିଚାର ଶେଷରେ ଶ୍ରୀଯୁକ୍ତ ଦ୍ୱିବେଦୀଙ୍କୁ ୭ବର୍ଷ ଓ ତାଙ୍କ ସହକର୍ମୀ-ମାନଙ୍କୁ ୭ବର୍ଷ, ୪ବର୍ଷ ଲେଖାଏ ଜେଲ୍ ଦଣ୍ଡ ଆଦେଶ ହୋଇଥିଲା । ଶ୍ରୀଯୁକ୍ତ ଦ୍ୱିବେଦୀ ଗିରଫ ହୋଇଯିବା ପରେ ମଧ୍ୟ ତାଙ୍କ ସହକର୍ମୀମାନେ ଅଗଷ୍ଟ ବିପ୍ଳବ ଚଳାଇବାକୁ ଉଦ୍ୟମ କରିଥିଲେ ଓ ପରେ ପରେ ଗିରଫ ହୋଇ ଯାଇଥିଲେ । ଏହି ସମୟରେ ଶ୍ରୀ ବିବୁଧେନ୍ଦ୍ର ମିଶ୍ର, ଶ୍ରୀ ସୁରାଜମଲ୍ଲ ସାହା, ଶ୍ରୀ ମୁରଲୀଧର ସାହୁ ଅଗ୍ରୱାଲ ସିଂହଭୂମିର ଶ୍ରୀ ମୋତିଲାଲ ତ୍ରିପାଠୀ ଓ ଶ୍ରୀ ଜପାପଦ ତ୍ରିପାଠୀ ପ୍ରମୁଖ ଭାରତର ବାମପନ୍ଥୀ ଫରୱାର୍ଡ଼ ନେତାମାନଙ୍କ ସଙ୍ଗେ ସମ୍ପର୍କ ରଖି ନେତାଜୀ ସୁଭାଷଚନ୍ଦ୍ରଙ୍କ ବାଣୀ ପ୍ରଚାର କରି ଅଗଷ୍ଟ ବିପ୍ଳବକୁ ଶକ୍ତିଶାଳୀ କରିବାକୁ କେତେକ ବୈପ୍ଳବିକ କର୍ମପନ୍ଥା ଅନୁସରଣ କରୁଥିଲେ ମାତ୍ର ଅଳ୍ପଦିନ ପରେ ଗିରଫ ହୋଇଗଲେ । ସେମାନଙ୍କ ନାମରେ ଏକ ଷଡ଼ଯନ୍ତ୍ର ମକଦ୍ଦମା କରିବା ପାଇଁ ସରକାର ବହୁଚେଷ୍ଟା କରି ମଧ୍ୟ ବିଫଳ ହେଲେ । ଫରୱାର୍ଡ଼

ବ୍ଲକର ବଣିଷ୍ଠକର୍ମୀ ଶ୍ରୀହର୍ଷ ମିଶ୍ର କଲିକତାଠାରେ ଗିରଫ ହୋଇ ଦମ ଦମ ଜେଲରେ ରହିଥିଲେ । ତାଙ୍କ ଠାରୁ କଥା ଆଦାୟ କରିବା ପାଇଁ ବଙ୍ଗଳାର ଗୋଇନ୍ଦା ବିଭାଗ ତାଙ୍କୁ ଅନେକ ଯନ୍ତ୍ରଣା ଦେଇଥିଲେ ।

ଏହା ଛଡ଼ା ବ୍ରହ୍ମପୁର ଜେଲରେ ରାଜବନ୍ଦୀମାନଙ୍କ ଉପରେ ଦୁଇଥର ଲାଠିମାଡ଼ ହୋଇଥିଲା ଓ ସେଥିରେ ଅନେକ ଆହତ ହୋଇଥିଲେ ।

# ଅଗଷ୍ଟ ବିପ୍ଳବ ଓ ଆଜାଦ୍ ହିନ୍ଦ୍ ଫୌଜ

"ମହାତ୍ମାଗାନ୍ଧି ଆଜି ସମସ୍ତ ଦେଶପ୍ରେମୀଙ୍କୁ ଆହ୍ୱାନ କରିଛନ୍ତି 'କର ବା ମର' । ନେତାମାନଙ୍କଠାରୁ ନେତୃତ୍ୱ ପାଇବା ପାଇଁ ଅପେକ୍ଷା କର ନାହିଁ, ଯାହା ଠିକ ବୋଲି ଭାବୁଛ କରି ଯାଅ, ଯେଉଁଥିରେ ସ୍ୱାଧୀନତା ହାସଲ ହେବ ତାହାହିଁ କର— ସଂକ୍ଷେପରେ ତାହାହିଁ ତାଙ୍କ ଆହ୍ୱାନର ତାତ୍ପର୍ଯ୍ୟ ସେ ମଧ୍ୟ ଉପଲବ୍ଧି କରୁଛନ୍ତି ଯେ ସ୍ୱାଧୀନତା ହାସଲ କରିବା ପାଇଁ ଏହାହିଁ ଅମର ସୁଯୋଗ । ଆମ ଦାଙ୍କକ୍ ସମ୍ମିଳନୀର ଶେଷକଥା ମଧ୍ୟ ଏଇଆ । ଆମେ ଆଜି ଏଇ କଥା ଶୁଣି ଆନନ୍ଦ ଅନୁଭବ କରୁଛୁ ଯେ ଆମେ ଯେଉଁ ପନ୍ଥା ଅବଲମ୍ବନ କରୁଛୁ କଂଗ୍ରେସ ତାକୁ ସମର୍ଥନ କରୁଛି ।" କର୍ଣ୍ଣେଲ ଲକ୍ଷ୍ମୀଙ୍କ ଡାଇରୀର ଏହି କଥାଟି ଆଜି ଆମକୁ ଯେତେ ଆନନ୍ଦ ଦେଉଛି, ଆମେ ଯଦି ଅଗଷ୍ଟ ବିପ୍ଳବ ବେଳେ ଦକ୍ଷିଣ ପୂର୍ବ ଏସିଆର ୩୦ ଲକ୍ଷ ଭାରତ ବାସୀଙ୍କ ସଂଗ୍ରାମ ଆୟୋଜନ ଜାଣି ପାରିଥାନ୍ତୁ ତା ହେଲେ ତାହା ଆମକୁ ତା ଅପେକ୍ଷା ଶତଗୁଣ ଆନନ୍ଦ ଦେଇଥାନ୍ତା । ଅଗଷ୍ଟ ବିପ୍ଳବର ଯୋଦ୍ଧାମାନେ ଏଥିରୁ କେତେ ସାହସ ଓ ଶକ୍ତି ପାଇଥାନ୍ତେ ଓ ପୋଲିସର

ଦମନ ଲୀଳାକୁ ବ୍ୟର୍ଥ କରି ବିପ୍ଳବକୁ ଅଧିକ ଶକ୍ତିଶାଳୀ କରିଥାନ୍ତେ ତାହା ହୁଏତ ଥକ ଅନୁଭବ କରି ହେବ ନାହିଁ । ନେତାଜୀ ସୁଭାଷଚନ୍ଦ୍ର ଓ ଆଜାଦ ହିନ୍ଦ୍ ଫଉଜକୁ ବ୍ରିଟିଶ ପ୍ରଚାର ଯେଉଁ ସ୍ଥାନ ଓ ଘୃଣ୍ୟ ରୂପ ଦେଇଥିଲା ତାହା ଅନେକଙ୍କୁ ବିଭ୍ରାନ୍ତ କରି ପକାଇଥିଲା, ଅନେକଙ୍କୁ ସନ୍ଦିହାନ କରି ଦେଇଥିଲା । ଭାରତବାସୀଙ୍କ ଚରମ ଦୁର୍ଭାଗ୍ୟ ଯେ ସେମାନେ ବିରାଟ ଆଜାଦ ହିନ୍ଦ୍ ଫଉଜର ଗୌରବମୟ କାହାଣୀ ସେତେବେଳେ ଜାଣି ପାରିଲେ ନାହିଁ ।

ଭାରତରେ କ୍ରିପସ୍ ପ୍ରସ୍ତାବ ବିଫଳ ହେବା ପରେ ବ୍ରିଟିଶ ଶାସନ ବିରୁଦ୍ଧରେ ଯେଉଁ ତିକ୍ତ ଭାବ ପ୍ରକାଶ ପାଇଥିଲା ତା ଫଳରେ ବ୍ରିଟିଶ ଶାସନକୁ ଲୋପ କରି ସ୍ୱାଧୀନତା ହାସଲ କରିବା ପାଇଁ ପ୍ରବଳ ଆକାଂକ୍ଷା ଜନସାଧାରଣଙ୍କ ହୃଦୟରେ ଜାଗି ଉଠିଲା ବେଳେ ସେଣେ ଦକ୍ଷିଣ ପୂର୍ବ ଏସିଆରେ ଲକ୍ଷ ଲକ୍ଷ ଭାରତବାସୀଙ୍କ ହୃଦୟରେ ନିଜ ମାତୃଭୂମିକୁ ସ୍ୱାଧୀନ କରିବା ପାଇଁ ଠିକ୍ ସେହିପରି ଭାବ ଯେ ଜାଗି ଉଠିଥିଲା, ପରାଧୀନ ଭାରତ ପକ୍ଷରେ ତାହା ନିଶ୍ଚୟ ସୌଭାଗ୍ୟର କଥା । ଭାରତୀୟ ଜନସାଧାରଣଙ୍କ ହୃଦୟର ଯୁଗ ଯୁଗ ସଞ୍ଚିତ ତିକ୍ତତା ଯେପରି ମହାତ୍ମା ଗାନ୍ଧିଙ୍କ 'ଭାରତଛାଡ଼'ରେ ପ୍ରକାଶ ପାଇଥିଲା, ଦକ୍ଷିଣପୂର୍ବ ଏସିଆବାସୀଙ୍କ ସେହି ଭାବ "ଭାରତୀୟ ସ୍ୱାଧୀନତା ସଂଘରେ" ପ୍ରକାଶ ପାଇଲା । "ଭାରତଛାଡ଼" ଯେପରି ଗାନ୍ଧିଜୀଙ୍କ "କର ବା ମର" ନିର୍ଦ୍ଦେଶରେ ଏକ ବିରାଟ ବିପ୍ଳବରେ ପରିଣତ ହେଲା ଭାରତ ସ୍ୱାଧୀନତା ସଂଘର ଭାବ ସେହିପରି ଆଜାଦ ହିନ୍ଦ୍ ଫଉଜରେ ପରିଣତ ହେଲା । ଅଗଷ୍ଟ ବିପ୍ଳବ ସଫଳ ହୋଇ ପାରିଲା ନାହିଁ, ଆଜାଦ ହିନ୍ଦ ଫଉଜର ସଶସ୍ତ୍ର ସଂଗ୍ରାମ

ମଧ୍ୟ ସଫଳ ହୋଇ ପାରିଲା ନାହିଁ । ଅଗଷ୍ଟ ବିପ୍ଳବ ଓ ଆଜାଦ ହିନ୍ଦ୍ ଫଉଜ ଆଜି ଭାରତର ୪୦ କୋଟି ଲୋକ ଓ ଦକ୍ଷିଣ ପୂର୍ବ ଏସିଆର ୩୦ ଲକ୍ଷ ଲୋକଙ୍କ ହୃଦୟରେ ମୁକ୍ତିର ଆକାଂକ୍ଷାକୁ ତୀବ୍ରତମ କରି ଦେଇଛି । ମୁକ୍ତି ସଂଗ୍ରାମ ପାଇଁ ଚରମ ତ୍ୟାଗ କରିବାକୁ ଓ ଅସୀମ ଦୁଃଖ ବରଣ କରିବାକୁ ଶିକ୍ଷା ଦେଇଛି । ସମଗ୍ର ଏସିଆର ଭାରତ ବାସୀ ଆଜି ଏକ ହୋଇ ଯାଇଛନ୍ତି । ସେମାନଙ୍କ ହୃଦୟରେ ଏକଭାବ ଓ ମୁଖରେ ଏକଭାଷା ପ୍ରକାଶ ପାଉଛି । ଅଗଷ୍ଟ ବିପ୍ଳବର ସୈନିକ ଓ ଆଜାଦ ହିନ୍ଦ ଫଉଜର ସୈନିକ ମାନଙ୍କ ଭିତରେ ଆଜି ଯେପରି ଏକପ୍ରାଣତା ଆସିଛି, "ଭାରତ ଛାଡ଼" ପ୍ରସ୍ତାବର ନେତା ମହାତ୍ମା ଗାନ୍ଧି ଓ ଆଜାଦ ହିନ୍ଦ୍ ଫଉଜର ପ୍ରଧାନ ସେନାପତି ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଭିତରେ ଆଜି ସେହିପରି ଏକପ୍ରାଣତା ଆସିଛି । ଗାନ୍ଧିଜୀଙ୍କ ଅହିଂସା ପନ୍ଥାରେ ବିଶ୍ୱାସ ନ ଥିଲେ ମଧ୍ୟ ବାଧ୍ୟ ହୋଇ ସେହି ପନ୍ଥାକୁ ଗ୍ରହଣ କରିଥିବା ଯୋଗୁ ସୁଭାଷଚନ୍ଦ୍ରଙ୍କ ବିରାଟ ବ୍ୟକ୍ତିତ୍ୱ ଓ ଅତୁଳନୀୟ ଦେଶପ୍ରେମ ଓ ଆନ୍ତରିକତା ପ୍ରକାଶ ପାଇବାର ସୁଯୋଗ ପାଉ ନ ଥିଲା ଏବଂ ସେଇଥିଯୋଗୁଁ ବୋଧହୁଏ ଗାନ୍ଧିଜୀ ଓ ନେତାଜୀଙ୍କ ଭିତରେ ଏକପ୍ରାଣତା ଓ ପରିସ୍ପରତମ ସମ୍ପର୍କ ସ୍ଥାପିତ ହୋଇ ପାରୁ ନ ଥିଲା । ମାତ୍ର ନେତାଜୀ ତାଙ୍କ ବିଶ୍ୱାସ ଓ ପନ୍ଥାକୁ ପୂରାପୂରି କାର୍ଯ୍ୟକାରୀ କରିବାର ପୂର୍ଣ୍ଣ ସୁଯୋଗ ପାଇଲା ପରେ ତାଙ୍କ ଦେଶପ୍ରେମନିଷ୍ଠା, ଉଜ୍ଜ୍ୱଳତମ ଭାବରେ ପ୍ରକାଶ ପାଇଲା ଓ ଗାନ୍ଧିଜୀ ତାଙ୍କୁ ସାଦରରେ ଗ୍ରହଣ କରି ନେଲେ । ଆଜାଦ ହିନ୍ଦ୍ ଫଉଜର ଭାରତ ଇତିହାସକୁ ଏହା ଏକ ବିରାଟ ଦାନ ।

ଅଜାଦ ହିନ୍ଦ ଫଉଜ ଗୋଟାଏ ବିସ୍ତୃତ ପରିକଳ୍ପନାର କାର୍ଯ୍ୟକାରୀ ଅଂଶ ବିଶେଷ । ସଶସ୍ତ୍ର ସଂଗ୍ରାମରେ ଭାରତକୁ ବ୍ରିଟିଶ କବଳରୁ ମୁକ୍ତ କରି ପୂର୍ଣ୍ଣ ସ୍ୱାଧୀନ କରିବା ପାଇଁ ଦକ୍ଷିଣ ପୂର୍ବ ଏସିଆବାସୀ ୩୦ ଲକ୍ଷ ଭାରତୀୟ ବେସାମରିକ ଜନସାଧାରଣ ଓ ବିଭିନ୍ନ ରଣକ୍ଷେତ୍ରରେ ଯୁଦ୍ଧବନ୍ଦୀ ହୋଇଥିବା ଭାରତୀୟ ସୈନ୍ୟଙ୍କ ପ୍ରତ୍ୟକ୍ଷ ସମର୍ଥନ ଓ ସହଯୋଗରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଯେଉଁ ସ୍ୱାଧୀନ ଭାରତ ସରକାର ଗଢ଼ା ହୋଇଥିଲା ଅଜାଦହିନ୍ଦ ଫଉଜ ସେହି ସରକାରର କାର୍ଯ୍ୟକାରୀ ଅଂଶ ବିଶେଷ । ଇଂରେଜମାନେ ସିଙ୍ଗାପୁର, ମାଳୟ ଓ ବର୍ମା ରଣକ୍ଷେତ୍ରରେ ଭାରତୀୟ ସୈନ୍ୟମାନଙ୍କୁ ଯେଉଁଭଳି ଅବସ୍ଥାରେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ କରାଇ ନିଜେ ସୁବିଧା ଖୋଜି ପଳାଇ ଆସିଲେ ସେ ଅବସ୍ଥାରେ ସେମାନଙ୍କ ଭିତରେ ଘୋର ଅସନ୍ତୋଷ ପ୍ରକାଶ ପାଇବା ସ୍ୱାଭାବିକ । ବ୍ରିଟିଶ ସୈନ୍ୟ ଓ ଭାରତୀୟ ସୈନ୍ୟଙ୍କ ନିରାପଦତା ପ୍ରତି ବ୍ରିଟିଶ ସରକାରଙ୍କ ଦୃଷ୍ଟିକୋଣର ଯେଉଁ ଯନ୍ତ୍ରଣାଦାୟକ ପରିଚୟ ଭାରତୀୟମାନେ ପାଇଲେ ତାହା ସେମାନଙ୍କର ଆଖି ଖୋଲି ଦେଲା । ତେଣେ ମାଳୟ, ସିଙ୍ଗାପୁର ଓ ବର୍ମାର ଭାରତୀୟମାନଙ୍କୁ ଯେଉଁଭଳି ଅସହାୟ ଅବସ୍ଥାରେ ପକାଇ ଦେଇ ଇଂରେଜମାନେ ପଳାଇ ଆସିଲେ ତାହା ଭାରତୀୟଙ୍କ ହୃଦୟରେ ଘୋର ନୈରାଶ୍ୟ ଓ ବିରକ୍ତି ଆଣିଦେଲା । ଜାପାନୀମାନେ ଭାରତୀୟ ଯୁଦ୍ଧବନ୍ଦୀ ଓ ବେ-ସାମରିକ ଭାରତୀୟଙ୍କର ଏହି ବ୍ରିଟିଶ ବିରୋଧୀ ତିକ୍ତ ମନୋଭାବକୁ ନିଜ ମତଲବ ହାସଲ କରିବାରେ ବ୍ୟବହାର କରିବାକୁ ଉଦ୍ୟମ କଲେ । ୧୯୪୨ ଫେବୃଆରୀରେ ଜାପାନୀ ସେନାପତି ମେଜର ଫୁଜିଅରା କେତେକ ଭାରତୀୟଙ୍କୁ ଯେଉଁ ନିମନ୍ତ୍ରଣ କରିଥିଲେ

ତାର ଅସଲ ଉଦ୍ଦେଶ୍ୟ ସେଇଆ ଥିଲା । ମାତ୍ର ଭାରତୀୟମାନେ ଜାପାନର ଏହି ଅଭିସନ୍ଧି ବୁଝିପାରି ଜାପାନୀ ସେନାପତିଙ୍କୁ ସଙ୍ଗେ ସଙ୍ଗେ ସହଯୋଗ କରିବାକୁ ଜବାବ ନ ଦେଇ ଭାରତୀୟମାନେ ନିଜ ନିଜ ଭିତରେ ଆଲୋଚନା ଚଳେଇଲେ । ଶେଷରେ ଭାରତର ଜଣେ ବଶିଷ୍ଠ ବିପ୍ଳବୀ ସନ୍ତାନ ଶ୍ରୀ ରାସବିହାରୀ ବୋଷଙ୍କ ନେତୃତ୍ୱରେ ୧୯୪୨ ମାର୍ଚ୍ଚ ୨୮ ଓ ୨୯ ତାରିଖରେ ଟୋକିଓଠାରେ ଜାପାନ, ଚୀନ, ମାଳୟ ଓ ଶ୍ୟାମର ପ୍ରତିନିଧିଙ୍କୁ ନେଇ ଯେଉଁ ସମ୍ମିଳନୀ ବସିଲା ସେଇଠି ଭାରତୀୟ ସ୍ୱାଧୀନ ସଂଘର ସୂତ୍ର ପାତ ହେଲା । ସଂଘର ଉଦ୍ଦେଶ୍ୟ ଭାରତକୁ ବିଦେଶୀ ଶାସନରୁ ସମ୍ପୂର୍ଣ୍ଣ ଭାବରେ ମୁକ୍ତ କରି ସ୍ୱାଧୀନ କରିବା ବୋଲି ଘୋଷଣା କରାଗଲା । ଅଜାଦ୍ ହିନ୍ଦ୍ ଫଉଜ ଗଠନ କରିବା ଏହି ସଂଘର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି । ପୁଣି ଜୁନ ମାସରେ ଦକ୍ଷିଣ ପୂର୍ବଏସିଆର ସମସ୍ତ ଭାରତୀୟ ପ୍ରତିନିଧିଙ୍କୁ ନେଇ ଆଉ ଏକ ସମ୍ମିଳନୀ ବାଙ୍କକଠାରେ ଡକାଇବାର ନିଷ୍ପତ୍ତି ହେଲା । ଏହା ଭିତରେ ଭାରତୀୟ ସ୍ୱାଧୀନତା ସଂଘର ଶାଖାମାନ ମାଳୟ ଓ ସିଙ୍ଗାପୁର ପ୍ରଭୃତିରେ ଆରମ୍ଭ ହୋଇଗଲା ଓ ଏହି ସଂଘରେ ଯୋଗଦେବା ପାଇଁ ଭାରତୀୟମାନଙ୍କୁ ଆହ୍ୱାନ କରାଗଲା । ବଣିକ୍ ଭାରତୀୟମାନେ ସଂଘର ଶାଖା ଗୁଡ଼ିଏ ଖୋଲି ସଭ୍ୟ ସଂଗ୍ରହ କରିବାରେ ଆଗ୍ରହ ଓ ଉତ୍ସାହରେ ଲାଗି ପଡ଼ିଲେ । ଅଳ୍ପଦିନ ଭିତରେ ଖାଲି ମାଳୟରେ ୬୨ଟି ଶାଖା ଖୋଲା ହୋଇଗଲା ଓ ୧୫୦୦୦ ଲୋକ ସ୍ୱାଧୀନତା ସଂଘରେ ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ଜୁନ ୧୮ ତାରିଖରେ ପୂର୍ବଏସିଆର ବିଭିନ୍ନ ସ୍ଥାନର ୧୦୦ ଜଣ ପ୍ରତିନିଧିଙ୍କୁ ନେଇ ବାଙ୍କକ ସମ୍ମିଳନୀ ବସିଲା । ଯୁଦ୍ଧବନ୍ଦୀମାନଙ୍କ ତରଫରୁ ପ୍ରତିନିଧିମାନେ ମଧ୍ୟ ଏଥିରେ ଯୋଗ ଦେଇଥିଲେ ।

ଏହି ସମ୍ମିଳନୀରେ ଭାରତୀୟ ସ୍ୱାଧୀନତା ସଂଘର ଶାସନତନ୍ତ୍ର ଗଢା ହେଲା । ସଂଘର ଲକ୍ଷ୍ୟ ହେଲା ଏକତା, ବିଶ୍ୱାସ ଓ ତ୍ୟାଗ ଓ ଉଦ୍ଦେଶ୍ୟ ହେଲା ଭାରତକୁ ସମସ୍ତ ବିଦେଶୀ ଶାସନ କବଳରୁ ମୁକ୍ତ କରି ଏକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ଏବଂ ଭାରତର ଶାସନତନ୍ତ୍ର ଗଢ଼ିବାର ସମ୍ପୂର୍ଣ୍ଣ ଭାର ଭାରତର ଜନସାଧାରଣଙ୍କ ହାତରେ ଛାଡ଼ି ଦେବା । ସଂଘର ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନରେ ସାର୍ ରାସବିହାରୀ ବୋଷ, ଶ୍ରୀ ରାଘବାନ୍; ଶ୍ରୀ କେ, ମେନନ୍, କପ୍ତାନ ମୋହନ ସିଂହ ଓ କର୍ଣ୍ଣେଲଗିଲ୍ଲଙ୍କ ଗଠିତ ଏକ ଯୁଦ୍ଧ ପରିଷଦ ହାତରେ ଅଜାଦ ହିନ୍ଦ୍ ଫଉଜ ଗଠନ ଓ ପରିଚାଳନା ଭାର ନ୍ୟସ୍ତ କରାଗଲା । ସମ୍ମିଳନୀ ଥଜ ଏକ ଘୋଷଣାରେ ଜଣାଇ ଦେଲେ ଯେ ଜାପାନ ଭାରତର ଅଖଣ୍ଡ ଓ ପୂର୍ଣ୍ଣ ସ୍ୱାଧୀନତା ସ୍ୱୀକାର କରିବ । ଭାରତରେ କୌଣସି ବୈଦେଶିକ ଶାସକର ସାମରିକ, ଅର୍ଥନୈତିକ, ରାଜନୈତିକ କର୍ତ୍ତୃତ୍ୱ ରହିବ ନାହିଁ । ଭାରତ ଜାତୀୟ କଂଗ୍ରେସର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଙ୍ଗେ ପୂରାପୂରି ସାମଞ୍ଜସ୍ୟ ରକ୍ଷି ଏହି ସଂଘର ଶାସନତନ୍ତ୍ର ଗଠିତ ହେଲା । ତ୍ରିରଙ୍ଗ ପତାକାକୁ ଜାତୀୟ ପତାକା ରୂପେ ଗ୍ରହଣ କରାଗଲା । ଶ୍ରୀ ସୁଭାଷ ବୋଷଙ୍କୁ ପୂର୍ବ ଏସିଆକୁ ଆସିବା ପାଇଁ ସୁବିଧା ଦିଆ ଯିବା ସକାଶେ ଏକ ପ୍ରସ୍ତାବ ମଧ୍ୟ ଗ୍ରହଣ କରା ଯାଇଥିଲା । ସଂଘର ଯୁଦ୍ଧ ପରିଷଦ ସାମରିକ ଜନସାଧାରଣ ତଥା ଯୁଦ୍ଧ ବନ୍ଦୀମାନଙ୍କୁ ଅଜାଦ ହିନ୍ଦ୍ ଫଉଜରେ ସୈନ୍ୟ ଶ୍ରେଣୀ ଭୁକ୍ତ କରାଇବାରେ ଲାଗି ପଡ଼ିଲେ । ୧୯୪୨ ନଭେମ୍ବର ବେଳକୁ ୫୨,୦୦୦ ଯୁଦ୍ଧ ବନ୍ଦୀଙ୍କ ଭିତରେ ୪୦ ହଜାର ଅଜାଦ ଫୌଜରେ ଯୋଗ ଦେଇ ସାରିଥିଲେ । ଭାରତୀୟ ସୈନ୍ୟଙ୍କୁ ନେଇ ଏକ ଉତ୍କୃଷ୍ଟ ସୈନ୍ୟ ବାହିନୀ

ଗଢ଼ିବା ପାଇଁ ଜାପାନୀମାନଙ୍କ ସଙ୍ଗେ ରୀତିମତ ସଂଘର୍ଷ ଚାଲି ଥାଏ । ମାତ୍ର ଜାପାନୀ ମାନଙ୍କ ସଙ୍ଗେ ରହିଥିବା ସମ୍ପର୍କ କ୍ରମେ ଖରାପ ହୋଇ ଆସିଲା । ତାଙ୍କ ସମ୍ମିଳନୀର ଜବାବ ଜାପାନ ଯାହା ଦେଲା ତହିଁରେ ଭାରତୀୟମାନେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ତେଣେ ଜାପାନର ଯୋଗସୂତ୍ର ବିଭାଗ ଭାରତୀୟଙ୍କ କାମରେ ହସ୍ତକ୍ଷେପ କରିବେ ନାହିଁ ବୋଲି କୁହା ଯାଇଥିଲେ ମଧ୍ୟ ଏହି ବିଭାଗର ଅଫିସର କକାନ୍ ନାନା ଭାବରେ ହସ୍ତକ୍ଷେପ ଆରମ୍ଭ କଲେ । ମାଳୟର ସ୍ୱରାଜ ଅନୁଷ୍ଠାନରେ ଶ୍ରୀ ରାଘବାନ୍‌ଙ୍କ ନେତୃତ୍ୱରେ ଜାତୀୟ ସେବା ପାଇଁ ଶିକ୍ଷା ପାଉଥିବା ଭାରତୀୟ ଯୁବକ ମାନଙ୍କ ଭିତରୁ କେତେକଙ୍କୁ ଜାପାନ ସାମରିକ ଅଫିସର ମାନେ ଭାରତରେ ଗୁପ୍ତଚର କାମ କରିବାକୁ ପଠାଇ ଦେଲେ । ଶ୍ରୀ ରାଘବାନ ଓ ଯୁଦ୍ଧ ପରିଷଦ ଏଥିରେ ଘୋର ବିରକ୍ତ ହୋଇ ଜାପାନଠାରେ ଏହାର ପ୍ରତିବାଦ କଲେ । ଏହା ଭିତରେ ଆଜାଦ ହିନ୍ଦ୍ ଫଉଜଙ୍କୁ ବର୍ମାକୁ ନେଇ ଯିବା ପାଇଁ ଜାପାନ ସାମରିକ କର୍ତ୍ତୃପକ୍ଷ ଜଣାଇ ଦେଲେ, ମାତ୍ର ଯୁଦ୍ଧ ପରିଷଦ ଏହାର ଘୋର ପ୍ରତିବାଦ କରି ସୈନ୍ୟଙ୍କୁ ଛାଡ଼ିବା ପାଇଁ ମନା କରି ଦେଲେ । ଶେଷରେ ଜାପାନର ମତଲବ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ମାତ୍ର ସେମାନେ କର୍ଣ୍ଣେଲ ଗିଲଙ୍କୁ ବ୍ରିଟିଶ ଗୁପ୍ତଚର ବୋଲି କହି ଗିରଫ କରି ନେଇଗଲେ । ଚାରିଆଡ଼ୁ ଭାରତୀୟମାନେ ଏହାର ପ୍ରତିବାଦ କଲେ । ଏ ସମ୍ପର୍କରେ କଥାବାର୍ତ୍ତା ହେବା ପାଇଁ ଶ୍ରୀ. ରାସବିହାରୀ ବୋଷ ଜାପାନ ପ୍ରଧାନ ମନ୍ତ୍ରୀ ଟୋଜୋଙ୍କ ନିକଟକୁ ଯିବା ପାଇଁ ସ୍ଥିର କଲେ । ମାତ୍ର ସୈନ୍ୟ ସଂଗ୍ରହ ପ୍ରଭୃତି କାମ ଚାଲିଥାଏ କେବଳ ଜାପାନ ସରକାର ଠାରୁ ଏକ ସ୍ପଷ୍ଟ ଜବାବ ପାଇବା ପାଇଁ ଭାରତୀୟମାନେ ଅପେକ୍ଷା କରି

ରହିଥାନ୍ତି । ଏହା ଭିତରେ ଜାପାନ ଯୋଗ ମୁଖ୍ୟ ଅଫିସର କକାନ ତାଙ୍କ କୌଶଳ ବଦଳାଇ ଭାରତୀୟ ସ୍ୱାଧୀନତା ସଂଘ ବିରୁଦ୍ଧରେ ଅଭି ଏକ ସମାନ୍ତରାଳ ଅନୁଷ୍ଠାନ ଗଢିବାରେ ଲାଗିଲେ ଓ ସ୍ୱାଧୀନତା ସଂଘ ବିରୁଦ୍ଧରେ ଭିତରେ ଭିତରେ ପ୍ରଚାର ଚଳେଇଲେ । ୧୯୪୩ ଫେବୃଆରୀ ମାସରେ ମାଳୟ ଶାଖା କମିଟି ଶ୍ରୀଯୁକ୍ତ ବୋଷଙ୍କ ନିକଟକୁ ଏକ ସ୍ମାରକ ପତ୍ର ପଠାଇଲେ ମାତ୍ର ତାଙ୍କ ପାଖରେ ଏ ପତ୍ର ପହଞ୍ଚିବା ପୂର୍ବରୁ ଜାପାନୀମାନେ ତାକୁ ହସ୍ତଗତ କରି ନେଲେ ଓ ମାଳୟ ଶାଖା ସଭାପତି ଶ୍ରୀ ରାଘବନ୍‌ଙ୍କୁ ଇସ୍ତଫା ଦେବା ପାଇଁ ଶ୍ରୀ ରାସ ବିହାରୀ ବୋଷଙ୍କ ଉପରେ ଚାପ ଦେଲେ । ଶେଷରେ ଶ୍ରୀ ରାଘବାନଙ୍କୁ ଇସ୍ତଫା ଦେବାକୁ ପଡ଼ିଲା । ମାଳୟ ଶାଖାର ଅନ୍ୟାନ୍ୟ ସଭ୍ୟମାନେ ମଧ୍ୟ ଇସ୍ତଫା ଦେଇ ଦେଲେ । ଏହି ଭଳି ସଙ୍କଟଜନକ ପରିସ୍ଥିତି ଭିତରେ ୧୯୪୩ ଏପ୍ରିଲ ମାସରେ ସିଙ୍ଗାପୁରଠାରେ ପୂର୍ବ ଏସିଆର ପ୍ରତିନିଧିମାନଙ୍କୁ ନେଇ ଆଉ ଏକ ସମ୍ମିଳନୀ ବସିଲା । ଏହି ସମ୍ମିଳନୀରେ ଶ୍ରୀରାସ-ବିହାରୀ ବୋଷ ଘୋଷଣା କଲେ ଯେ ସୁଭାଷ ବାବୁ ଶୀଘ୍ର ଆସି ପହଞ୍ଚିବେ ଓ ଏହି ସଂଘର ଗୁରୁ ଦାୟିତ୍ୱ ଭାର ବହନ କରିବେ ।

ଶ୍ରୀ ସୁଭାଷଚନ୍ଦ୍ର ବୋଷ ବର୍ଲିନରେ ଥିଲାବେଳେ ଆଜାଦ ହିନ୍ଦ ଫୌଜ ଗଢିଥାନ୍ତି । ଭାରତୀୟ ଯୁଦ୍ଧବନ୍ଦୀ ଓ ଇଉରୋପର ଭାରତୀୟମାନଙ୍କୁ ନେଇ ୩୫୦୦ ସେନାରେ ଗଠିତ ଏହି ଆଜାଦ ଫୌଜ ସୁଭାଷଚନ୍ଦ୍ରଙ୍କ ସେନାପତିତ୍ୱରେ ଦକ୍ଷିଣ ଫ୍ରାନ୍ସ, ବୋର୍ଡ଼ୁଅ ଓ ଲରେନ୍ସ ଯୁଦ୍ଧକ୍ଷେତ୍ରରେ ଇଂରେଜ ଓ ଆମେରିକା ସୈନ୍ୟଙ୍କ ବିରୁଦ୍ଧରେ ଘୋର ସଂଗ୍ରାମରେ ଲିପ୍ତ ଥାନ୍ତି । କୌଣସି ରୁଷିଆ ବା ଜାପାନ ସୈନ୍ୟଙ୍କ ବିରୁଦ୍ଧରେ

ସେମାନେ ଲଢ଼ି ନ ଥିଲେ । ଏହି ସମୟରେ ପୂର୍ବ ଏସିଆର ୩୦ ଲକ୍ଷ ଭାରତବାସୀଙ୍କ ଅହ୍ୱାନ ସୁଭାଷଚନ୍ଦ୍ରଙ୍କ ନିକଟରେ ପହଞ୍ଚିଲା ଓ ସେ ସେହି ଅହ୍ୱାନକୁ ଏଡ଼ି ଦେବା ପାଇଁ ଚାହିଁଲେ ନାହିଁ । ଇତଃପୂର୍ବରୁ ଆଜାଦ ହିନ୍ଦ୍ ଫଉଜ ତାଙ୍କ ବିରାଟ ସ୍ୱପ୍ନକୁ ରୂପ ଦେଇ ପାରି ନ ଥିଲେ ବ୍ରିଟିଶ ଓ ଅମେରିକାର ବିରାଟ ସେନାବାହିନୀଙ୍କ ନିକଟରେ ସେମାନେ ଆତ୍ମସମର୍ପଣ କରିଥିଲେ । ପୂର୍ବ ଏସିଆରେ ଦୁର୍ଦ୍ଧର୍ଷ ଅଜାଦ ହିନ୍ଦ ଫଉଜ ଗଢ଼ି ବ୍ରିଟିଶ ସରକାରକୁ ଶେଷ ସଂଗ୍ରାମ ଦେବା ପାଇଁ ସୁଭାଷଚନ୍ଦ୍ର ସବୁବେଳେ ବ୍ୟାକୁଳ ହୋଇ ସୁଯୋଗ ଖୋଜୁଥିଲେ । ପୂର୍ବ ଏସିଆ ବାସୀଙ୍କ ଅହ୍ୱାନରେ ସୁଭାଷଚନ୍ଦ୍ର ଜଳଯାନର ସମସ୍ତ ବାଧା ବିପଦ ଭିତରେ ୧୯୪୩ ଜୁନ ମାସରେ ଟୋକିଓରେ ପହଞ୍ଚିଲେ ଓ ଜୁଲାଇ ୨ ତାରିଖରେ ସିଙ୍ଗାପୁରରେ ପହଞ୍ଚିଲେ । ତାଙ୍କ ସଭାପତିତ୍ୱରେ ଅଜାଦ ହିନ୍ଦ ଫଉଜ ପୁନର୍ଗଠିତ ହେଲା । ଏ ଆନ୍ଦୋଳନର ସମସ୍ତ ଦାୟିତ୍ୱ ଭାର ସେ ନିଜେ ବହନ କଲେ । ସମଗ୍ର ପୂର୍ବ ଏସିଆରେ ଏକ ପ୍ରବଳ ଉନ୍ମାଦନା ଓ ଚାଞ୍ଚଲ୍ୟ ଖେଳିଗଲା । ଭାରତ ବାସୀଙ୍କ ହୃଦୟରେ ଅପୂର୍ବ ସାହସ ଓ ଶକ୍ତି ସଞ୍ଚାର ହେଲା । ଅଜାଦ ହିନ୍ଦ ଫୌଜ ଓ ସ୍ୱାଧୀନତା ସଂଘ ଭିତରେ ନବ ପ୍ରାଣ ଓ ପ୍ରେରଣା ଖେଳିଗଲା । ଜୁଲାଇ ୫ ତାରିଖରେ ଅଜାଦ ହିନ୍ଦ ବାହିନୀ ଗଠନ ସମ୍ବାଦ ପୃଥିବୀରେ ଘୋଷିତ ହେଲା । ଅଜାଦ ହିନ୍ଦ ଫଉଜର ଶାଖା ସ୍ୱରୂପ "ଝାନ୍ସିରାଣୀ ବାହିନୀ" ନାମରେ ଭାରତୀୟ ନାରୀମାନଙ୍କୁ ନେଇ ଏକ ସୈନ୍ୟବାହିନୀ ଗଢ଼ାହେଲା । ଏହି ବାହିନୀରେ ଥିବା ପ୍ରାୟ ଦୁଇ ହଜାର ମହିଳାଙ୍କୁ ରୋଗୀ ଓ ଆହତ ସେବା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସାମରିକ ଶିକ୍ଷା ଦେବାପାଇଁ ସିଙ୍ଗାପୁର ଓ ରେଙ୍ଗୁନରେ ଦୁଇଟି ସାମରିକ

ଶିକ୍ଷା ଶିବିର ଖୋଲା ଯାଇଥିଲା । ଆଜାଦ ହିନ୍ଦ୍ ଫଉଜର ସୈନିକମାନଙ୍କୁ ସାମରିକ ଶିକ୍ଷା ଦେବା ପାଇଁ ମଧ୍ୟ ଶିକ୍ଷାଶିବିରମାନ ଖୋଲା ହେଲା । କେବଳ ମାଳୟ ଶିକ୍ଷା କେନ୍ଦ୍ରରେ ୭ ହଜାର ସୈନିକ ଶିକ୍ଷା ପାଇଥିଲେ । ଅଫିସରମାନଙ୍କୁ ଶିକ୍ଷା ଦେବା ପାଇଁ ମଧ୍ୟ ଏକ ଶିକ୍ଷାକେନ୍ଦ୍ର ଖୋଲା ଯାଇଥିଲା । ଝାନ୍ସିରାଣୀ ବାହିନୀର ପ୍ରଧାନ ସେନାନାୟିକା ମେଜର ଜେନେରାଲ ଲକ୍ଷ୍ମୀ ସମଗ୍ର ଦକ୍ଷିଣ ପୂର୍ବ ଏସିଆରେ ଅମର କୀର୍ତ୍ତି ଅର୍ଜନ କରି ତାଙ୍କ ମାତୃ ଭୂମି ଭାରତରେ ଆସି ପହଞ୍ଚିଛନ୍ତି । ଡ଼ାଃ ଲକ୍ଷ୍ମୀଙ୍କ ସ୍ୱାମୀ "ଆତ୍ମହତ୍ୟା ବାହିନୀ"ର ସର୍ବ ଶ୍ରେଣୀ ବ୍ୟକ୍ତି ହୋଇ ଯୁଦ୍ଧ କ୍ଷେତ୍ରରେ ଏକ ସାହସିକତା ପୂର୍ଣ୍ଣ କାମର ନେତୃତ୍ୱ ନେଇ ପ୍ରାଣ ହରାଇଥିଲେ ।

ଆଜାଦ ହିନ୍ଦ ଫଉଜର କାମକୁ ଅଧିକ ଶୃଙ୍ଖଳିତ କରି ଏହାକୁ ଅନ୍ତର୍ଜାତୀୟ ଖ୍ୟାତି ଦେବା ପାଇଁ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଏକ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର ୧୯୪୩ ଅକ୍ଟୋବର ୩୧ ତାରିଖ ଦିନ ଗଢ଼ା ହେଲା ଓ ଏହି ସରକାର ଅଧୀନରେ ବିଭିନ୍ନ ବିଭାଗମାନ ଖୋଲା ହୋଇ ସୁବିଧାମତ କାମ ଚାଲିଲା । ଏହି ସ୍ୱାଧୀନ ଭାରତ ସରକାର ପକ୍ଷରୁ ଏକ ବିରାଟ ଘୋଷଣା ନିଜେ ନେତାଜୀ ସୁଭାଷ ବୋଷ କ୍ୟାପ୍ଟେନ ଲକ୍ଷ୍ମୀ, ମେଜର ଜେନେରାଲ ସାନର୍ଜ୍ୟାଜ, କର୍ଣ୍ଣେଲ ଚଟର୍ଜି ପ୍ରମୁଖ ୨୦ ଜଣ ମନ୍ତ୍ରୀ, ସେକ୍ରେଟେରୀ ଓ ପରାମର୍ଶଦାତାଙ୍କ ସ୍ୱାକ୍ଷରରେ ପ୍ରକାଶ ପାଇଲା । ଅସ୍ଥାୟୀ ଭାରତ ସରକାରକୁ ଅକ୍ଷଶକ୍ତି ପକ୍ଷର ୯ଟି ସରକାର ସ୍ୱୀକାର କରି ନେଇଥିଲେ ଓ ଅପୂର୍ବ ନୈତିକ ସମର୍ଥନ ଦେଇଥିଲେ । ଜାପାନ ସଙ୍ଗେ ସ୍ୱତନ୍ତ୍ର ଭାବରେ ଏହି ସରକାରଙ୍କ ପକ୍ଷରୁ ଚୁକ୍ତି ହୋଇଥିଲା ଓ ଏହି ସରକାର ପକ୍ଷରୁ

ଟୋକ୍ୱିଓ, ଫିଲ୍‌ପାଇନ ଓ ବର୍ମାରେ ରାଜଦୂତମାନ ରହିଥିଲେ । ଅସ୍ଥାୟୀ ସ୍ୱାଧୀନ ସରକାରକୁ ପୂର୍ଣ୍ଣ ଭାବରେ ଜାପାନ କବଳରୁ ମୁକ୍ତ କରିବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା କରାଯାଇଥିଲା । ଅସ୍ତ୍ରଶସ୍ତ୍ର ଓ ଖାଦ୍ୟ ଜିନିଷ କିଣିବା ପାଇଁ ଏହି ସରକାରଙ୍କ ପକ୍ଷରୁ ଏକ ଆଜାଦ ହିନ୍ଦ ବ୍ୟାଙ୍କ ଖୋଲା ଯାଇଥିଲା । ଏହି ବ୍ୟାଙ୍କକୁ ସମଗ୍ର ପୂର୍ବ ଏସିଆର ଧନୀ ବଣିକ ତଥା ଗରିବ, ବେପାରୀ ସମସ୍ତେ ମୁକ୍ତ ହସ୍ତରେ ଅର୍ଥ ଦାନ କରିଥିଲେ ଓ ତା ଫଳରେ ୮ କୋଟି ଟଙ୍କା ଏହି ବ୍ୟାଙ୍କରେ ଜମା ହୋଇଥିଲା । ଏହି ଟଙ୍କାରେ ଆଜାଦ ହିନ୍ଦ ଫଉଜର ସମସ୍ତ ଖର୍ଚ୍ଚ ଚଳିଥିଲା । ଏହି ବ୍ୟାଙ୍କକୁ ବହୁ ଧନୀ ଓ ଦରିଦ୍ର ଭାରତୀୟ ସେମାନଙ୍କର ସର୍ବସ୍ୱ ଦାନ କରି ଦେଇ ଅଜ ଦାଣ୍ଡର ଭିକାରୀ ହୋଇ ବୁଲୁଛନ୍ତି । ଭାରତବାସୀଙ୍କ ଏହି ଅପୂର୍ବ ତ୍ୟାଗର ବାସ୍ତବିକ ତୁଳନା ନାହିଁ । ଭାରତବାସୀଙ୍କର ଏହି ଅପୂର୍ବ ଅତୁଳନୀୟ ଧନଜନ, ତ୍ୟାଗ ଓ ନୈତିକ ସମର୍ଥନରେ ଯେଉଁ ବିରାଟ ଆଜାଦ ହିନ୍ଦ ଫଉଜ ଗଢ଼ା-ହେଲା ଓ ଦିନକୁ ଦିନ ଶକ୍ତିଶାଳୀ ହୋଇ ଉଠିଲା ତା ଫଳରେ ବ୍ରିଟିଶ ସରକାର କେବଳ ନୁହେଁ ନିଜେ ଜାପାନ ମଧ୍ୟ ଭୟ ଓ ସନ୍ଦେହ ଗଣିଥିଲା । ଜାପାନ ଏହି ବିରାଟ ଶକ୍ତିଶାଳୀ ଆଜାଦ ହିନ୍ଦ ଫଉଜକୁ ଭାରତ ଆକ୍ରମଣରେ ଲଗାଇବା ପାଇଁ ଯେତେ କୌଶଳ କଲା ନେତାଜୀ ସୁଭାଷ ଚନ୍ଦ୍ର ଜାପାନର ସେହି ସମସ୍ତ କୌଶଳକୁ ବ୍ୟର୍ଥ କରି ଦେଇଥିଲେ । ନେତାଜୀ ଚାହୁଁଥିଲେ ଯେ ଆଜାଦ ହିନ୍ଦ ଫଉଜ ଜାପାନୀ ସୈନ୍ୟଙ୍କଠାରୁ ସଂପୂର୍ଣ୍ଣ ଅଲଗା ହୋଇ ଭାରତୀୟ ଅଫିସରଙ୍କ ସେନାପତିତ୍ୱରେ ଭାରତ ଭୂମିରେ ଯୁଦ୍ଧ କରିବେ ଓ ଯେଉଁ ସବୁସ୍ଥାନ ଅଧିକାର କରିଯିବ ସେ ସବୁକୁ ଅସ୍ଥାୟୀ ଭାରତ ସରକାରଙ୍କ ଅଧୀନରେ ଛାଡ଼ି ଦିଆ ଯିବ ।

ଜାପାନ ଏହି ସନ୍ଧିରେ ରାଜି ହେବା ପରେ ଯାଇଁ ଭାରତ ଆକ୍ରମଣ ଆରମ୍ଭ ହେଲା ଓ ଆଜାଦ ହିନ୍ଦ ଫଉଜ ଏହି ଆକ୍ରମଣର ପ୍ରଧାନ ଭାଗ ଗ୍ରହଣ କଲେ । ୧୯୪୪ ଫେବୃଆରୀରେ ଆଜାଦ ହିନ୍ଦ ଫଉଜର ସାମରିକ କାର୍ଯ୍ୟ ଆରମ୍ଭ ହେଲା ଓ ମାର୍ଚ୍ଚ ୮ ତାରିଖରେ ସେମାନେ ଭାରତ ସୀମାନ୍ତ ଅତିକ୍ରମ କରି ଆକ୍ରମଣ ଆରମ୍ଭ କଲେ । ଆଜାଦ ହିନ୍ଦ ଫଉଜର "ସୁଭାଷବାହିନୀ", ଗାନ୍ଧିବାହିନୀ", "ନେହେରୁ ବାହିନୀ" ଓ "ଆଜାଦ ବାହିନୀ" ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ । ଏମାନେ ସମସ୍ତେ ଆଧୁନିକ ଅସ୍ତ୍ରଶସ୍ତ୍ର ଓ ଯୁଦ୍ଧକୌଶଳ ସମ୍ପୂର୍ଣ୍ଣ ଭାବରେ ଶିକ୍ଷା ପାଇଥିଲେ । ମେଜର ଜେନେରାଲ୍ ସାନଓ୍ୱାଜଙ୍କ ସେନାପତିତ୍ୱରେ 'ସୁଭାଷ ବାହିନୀ' ପ୍ରଥମେ ମୋଗାଇ ପ୍ରଭୃତି ବହୁସଂଖ୍ୟକ ଗାଁକୁ ଦଖଲ କରି ଇମ୍ଫାଲକୁ ଘେରି ଯାଇଥିଲେ ଓ ଏହି ଭାରତ ଭୂମିରେ ଜାତୀୟ ପତାକା ଉଡ଼ାଇ ଥିଲେ । ଜାପାନ ପୂର୍ବରୁ ଛାଡ଼ି ଦେଇଥିବା ଆଣ୍ଡାମାନ ଦ୍ୱୀପ ଓ ଭାରତର ଏହି ସବୁ ସ୍ୱାଧୀନ ଅଞ୍ଚଳରେ ମେଜର ଜେନେରାଲ ଚାଟର୍ଜିଙ୍କୁ ଲାଟ ରୂପେ ନିଯୁକ୍ତ କରାଯାଇଥିଲା । ଏଥିରେ ଜାପାନ ସରକାର ବା ଜାପାନ ସୈନ୍ୟ କୌଣସି ହସ୍ତକ୍ଷେପ କରି ନ ଥିଲେ । ମାତ୍ର ଏହି ଆକ୍ରମଣ ସ୍ଥାୟୀ ହୋଇ ପାରିଲା ନାହିଁ । ଯୁଦ୍ଧକ୍ଷେତ୍ରରେ ପ୍ରବଳ ବର୍ଷା ଯୋଗୁ ଯାତାୟାତ ରାସ୍ତା ଏକାବେଳକେ ଖରାପ ହୋଇଗଲା ଓ ଉଡ଼ାଜାହାଜ ଅଭାବର ଜିନିଷପତ୍ର କିଛି ମିଳି ପାରିଲା ନାହିଁ ତେଣୁ ଆଜାଦ ହିନ୍ଦ ଫଉଜ ବାଧ୍ୟ ହୋଇ ପଛକୁ ଫେରି ଆସିଥିଲେ । ଆଜାଦ ହିନ୍ଦ ଫଉଜର ସୈନିକମାନେ ଖାଦ୍ୟାଭାବ ଯୋଗୁଁ ଘାସପତ୍ର ଖାଇ ଜୀବନ ବଞ୍ଚାଇ ଥିଲେ ମଧ୍ୟ ବ୍ରିଟିସ ସାମରିକ ଅଫିସରମାନେ ପ୍ରଲୋଭନ ଦେଖାଇ ଯାଉଥିବା ଉତ୍କୃଷ୍ଟ ଖାଦ୍ୟ ଜିନିଷ

ଗ୍ରହଣ କରି ନ ଥିଲେ । ଏଭଳି ଖାଦ୍ୟ ବସ୍ତ୍ର ଓ ଅସ୍ତ୍ର ଶସ୍ତ୍ର ଅଭାବ ଥିଲେ ମଧ୍ୟ ଆଜାଦ ହିନ୍ଦ୍ ଫଉଜର ସୈନିକମାନେ ସେମାନଙ୍କ ବୀର ସେନାପତିଙ୍କ ଆଦେଶରେ ଯେଉଁଭଳି ବୀରତ୍ୱ ଓ ସାହସର ସହିତ ସମ୍ମୁଖ ଯୁଦ୍ଧକ୍ଷେତ୍ରରେ ବ୍ରିଟିଶ ସୈନ୍ୟଙ୍କ ସହିତ ଯୁଦ୍ଧ କରିଛନ୍ତି ଭାରତର ମୁକ୍ତି ସଂଗ୍ରାମର ଇତିହାସରେ ତାହା ଚିର ଅମର ହୋଇ ରହିବ । ଏହି ବୀର ସୈନିକମାନଙ୍କର ଦେଶପ୍ରେମ ଛଡ଼ା ଅନ୍ୟ କୌଣସି ଅର୍ଥ ଲାଳସା ନ ଥିବା ଯୋଗୁ ଯେତେବେଳେ ସେମାନଙ୍କୁ ହଟିବାକୁ ପଡ଼ିଲା ସେତେବେଳେ ସେମାନେ ବାଧ୍ୟହୋଇ ତାହା କରିଥିଲେ । ଆଜାଦ ହିନ୍ଦ୍ ଫଉଜର ବୀର ସୈନିକ ଓ ସେନାପତିମାନଙ୍କ ଅତୁଳନୀୟ ତ୍ୟାଗ, ଦେଶପ୍ରେମ, ସାହସ ଓ ବୀରତ୍ୱ ମୂଳରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଭାବ ଓ ବାଣୀ ରହିଥିଲା । ନେତାଜୀଙ୍କ ଉତ୍ସାହ ଓ ଉଦ୍ଦୀପନା ସେମାନଙ୍କୁ ସବୁ ବାଧାବିଘ୍ନ ଓ ସବୁ ଦୁଃଖ କଷ୍ଟକୁ ଅନାୟାସରେ ଅତିକ୍ରମ କରିବାକୁ ଅସୀମ ସାହସ ଦେଉଥିଲା । ନେତାଜୀ ନିଜେ ଯୁଦ୍ଧକ୍ଷେତ୍ରରେ ଅନେକ ସମୟରେ ସେମାନଙ୍କ ପାଖେ ପାଖେ ରହି ସେମାନଙ୍କୁ ସାହସ ଓ ଉତ୍ସାହ ଦେଉଥିଲେ । ନିଜେ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଭୁଲି ସେମାନଙ୍କ ସଙ୍ଗେ ଘାସ ଓ ପତ୍ର ଖାଇ ଜୀବନ କଟାଇ ଥିଲେ । କେତେଥର ନେତାଜୀଙ୍କ ସେନାପତି-ମାନେ ତାଙ୍କୁ ବ୍ରିଟିଶପକ୍ଷ ବୋମାବୃଷ୍ଟି ଓ ଅନ୍ୟାନ୍ୟ ବିପଦର ଆଶଙ୍କା ସ୍ମରଣ କରାଇ ଦେଇ ଯୁଦ୍ଧକ୍ଷେତ୍ରରୁ ଚାଲି ଯିବାକୁ ନିବେଦନ କରିଥିଲେ ମଧ୍ୟ ସେ ତାହା ଶୁଣି ନ ଥିଲେ । ସେ ତାଙ୍କ ସୈନ୍ୟମାନଙ୍କ ଦୁଃଖସୁଖ ଓ ଯନ୍ତ୍ରଣାର ସମଭାଗୀ ହେବା ଗୌରବଜନକ ବୋଲି ମନେ କରିଥିଲେ । ଦୁଇ ତିନିଥର ଅଦ୍ଭୁତ ଭାବରେ ସେ ବୋମା ଆକ୍ରମଣରୁ ଅଳ୍ପକେ ରକ୍ଷା ପାଇ

ଯାଉଥିଲେ । ଅନେକଥର ବ୍ରିଟିଶ ସରକାରଙ୍କ ଗୁପ୍ତଚରମାନେ ନେତାଜୀଙ୍କୁ ହତ୍ୟା କରିବାକୁ ଉଦ୍ୟମ କରି ବିଫଳ ହୋଇଛନ୍ତି । ଭଗବାନ ଯେପରି ଗୋଟାଏ ମହାନ୍ ଉଦ୍ଦେଶ୍ୟ ପାଇଁ ତାଙ୍କୁ ବଞ୍ଚାଇ ରଖିବାକୁ ଚାହିଁଥିଲେ । ନେତାଜୀ ସୁଭାଷଚନ୍ଦ୍ର ପୂର୍ବଏସିଆର ୨୫ ଲକ୍ଷ ଭାରତବାସୀଙ୍କ ପାଇଁ ଯାହା କରିଛନ୍ତି ତାହା ସେମାନେ କେବେ ଭୁଲି ପାରିବେ ନାହିଁ । ଭାରତୀୟମାନେ ଜାପାନର ସୈନ୍ୟମାନଙ୍କ ହାତରେ ଯେଉଁ ଲଜ୍ଜା, ଅପମାନ ଓ ଲାଞ୍ଛନା ପାଉଥିଲେ ତାହା କେବଳ ନେତାଜୀଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ ବଳରେ ବନ୍ଦ ହୋଇ ପାରିଥିଲା ଓ ଜାପାନ ସରକାର ଭାରତୀୟମାନଙ୍କୁ ଏକ ସ୍ୱାଧୀନ ସରକାରର ଲୋକ ହିସାବରେ ବ୍ୟବହାର କରିଥିଲେ । ଭାରତୀୟମାନଙ୍କ ଧନ ସମ୍ପତ୍ତି ଓ ଜୀବନ ନିରାପଦରେ ରକ୍ଷା କରିବା ପାଇଁ ନେତାଜୀଙ୍କ ଉଦ୍ଦେଶ୍ୟରେ ଅଜାଦ ହିନ୍ଦ୍ ସରକାର ପକ୍ଷରୁ ଯଥୋଚିତ ବ୍ୟବସ୍ଥା ହୋଇଥିଲା । ଭାରତୀୟମାନଙ୍କ ପିଲାମାନଙ୍କ ଶିକ୍ଷା ପାଇଁ ଅନେକ ଶିକ୍ଷାନୁଷ୍ଠାନମାନ ଖୋଲା ଯାଇଥିଲା ଓ ସେମାନଙ୍କ ସ୍ୱାସ୍ଥ୍ୟୋନ୍ନତି ଓ ଚିକିତ୍ସା ପାଇଁ ଡାକ୍ତର ଖାନାମାନ ଖୋଲା ଯାଇଥିଲା । ଭାରତୀୟମାନଙ୍କ ସର୍ବାଙ୍ଗ ଉନ୍ନତି ପାଇଁ ନେତାଜୀଙ୍କ ନେତୃତ୍ୱରେ ଅଜାଦ ହିନ୍ଦ ସରକାର ପକ୍ଷରୁ ଏତେ ସବୁ ବ୍ୟବସ୍ଥା କରାଯାଇ ଥିଲେ ମଧ୍ୟ ପୂର୍ବଏସିଆରେ ଥିବା ବର୍ମା ଅଧିବାସୀ ଓ ଚୀନ ବାସୀଙ୍କ ପ୍ରତି ନେତାଜୀଙ୍କ ଓ ଅଜାଦ ହିନ୍ଦ୍ ସରକାରଙ୍କ କୌଣସି ବିରୋଧ ନ ଥିଲା । ଦକ୍ଷିଣ ପୂର୍ବ ଏସିଆରୁ ଜାପାନ ଅଧିକାର କରି ରଖିଥିବା ବେଳେ ଜାପାନ ବିରୁଦ୍ଧରେ ପ୍ରତିରୋଧ କରିବା ପାଇଁ ବର୍ମା ଜାତୀୟ ସୈନ୍ୟବାହିନୀ ଯେଉଁ ଗୁପ୍ତ ଆନ୍ଦୋଳନ ଚଳେଇଥିଲେ ଓ ଚୀନମାନେ ସେହି କଳ ପ୍ରତିରୋଧ ଦଳ ଗଢ଼ିଥିଲେ ସେମାନଙ୍କ ସଙ୍ଗେ ନେତାଜୀଙ୍କର

